# ମର ଦେହେ ଅମର ମଣିଷ

ଲେଖକ
**ଶ୍ରୀ ମୁରଲୀଧର ପ୍ରଧାନ**, ଏମ୍. ଏ., ଡି. ଇଡି.
ଭୂତପୂର୍ବ ପ୍ରଧାନ ଶିକ୍ଷକ, କ୍ଷେତ୍ରବାସୀ ଏକାଡେମୀ
ନରକାରପୁର, ପୁରୀ

ପ୍ରକାଶିକା :
**ଶ୍ରୀମତୀ କନକପ୍ରଭା ଷଡ଼ଙ୍ଗୀ,** ବି. ଏ., ବି. ଇଡ଼.
ମାର୍ଫତ : ଡକ୍ଟର ରାମଚନ୍ଦ୍ର ଷଡ଼ଙ୍ଗୀ
ଜଗନ୍ନାଥବଲ୍ଲଭ, କଟକ-୭୫୩୦୦୧

ମୁଦ୍ରାକର :
**ଗ୍ରନ୍ଥ ପ୍ରକାଶିନୀ**
ସୂତାହାଟ, କଟକ-୧

ନୂତନ ମୁଦ୍ରଣ : ୧୯୮୯

ମୂଲ୍ୟ : ଟ ୭·୭୫ ପଇସା ମାତ୍ର

# ମୁଖବନ୍ଧ

ବର୍ତ୍ତମାନ ସମାଜରେ ବୈଷୟିକ ଚିନ୍ତାଧାରାର ପ୍ରାବଲ୍ୟହେତୁ ଆଧ୍ୟାତ୍ମିକ ଚିନ୍ତାଧାରା ଦୂରେଇ ହୋଇ ଯାଉଛି । ସୁଖୀ ସମାଜ ଗଠନ ପାଇଁ ନିର୍ମଳ ଓ ଶୁଦ୍ଧପୂତ ଜୀବନର ଆବଶ୍ୟକତା ଥିବାରୁ ଦେଶର ଭବିଷ୍ୟତ ବଂଶଧରମାନଙ୍କୁ ସେହି ପଥରେ ପଥିକ କରିବାକୁ ହେଲେ ସେମାନଙ୍କ ମନରେ ଦେଶପ୍ରୀତି, କର୍ତ୍ତବ୍ୟ ନିଷ୍ଠା, ସେବା ମନୋଭାବ, ଉଦାରତା, ନିର୍ଭୀକତା, ମାନବବାଦିତା ଓ ଆଧ୍ୟାତ୍ମିକ ଚେତନା ପ୍ରଭୃତି ଐଶ୍ୱରିକ ସଦ୍‌ଗୁଣର ଉଦ୍ରେକ କରାଇବା ଯଥେଷ୍ଟ ଆବଶ୍ୟକତା ଅଛି । ତେଣୁ ବାଳକ ବାଳିକାମାନଙ୍କର ନିର୍ମଳଚରିତ୍ର ଗଠନ ନିମନ୍ତେ ମହା-ମାନବମାନଙ୍କର ପଦାଙ୍କ ଅନୁସରଣ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଏହି ଚିନ୍ତା ମନରେ ପୋଷଣକରି ମହାମାନବମାନଙ୍କର ଅମୂଲ୍ୟ ଜୀବନରୁ ସାରବସ୍ତୁମାନ ଗୁଣ୍ଠିଆଣି ପିଲାମାନଙ୍କ ଆଗରେ ଉପସ୍ଥାପନ କରିବା ଏହି କ୍ଷୁଦ୍ର ପୁସ୍ତିକାର ଏକାନ୍ତ ଲକ୍ଷ୍ୟ । ଆଶାକରେ ଦେଶ ବିଦେଶର ଅଗଣିତ ବାଳକ ବାଳିକା ନିଜନିଜର ଚରିତ୍ରକୁ ନିଷ୍କଳଙ୍କ ତଥା ମହମାମୟ କରିବା ସଙ୍ଗେ ସଙ୍ଗେ ନିଜ ଦେଶର ମୁଖ ଉଜ୍ଜ୍ୱଳ କରିବେ ଓ ଉନ୍ନତ ପୃଥିବୀ ଗଠନରେ ଭାଗୀହେବେ । ଇତି ।

—ଲେଖକ

# ସୂଚୀପତ୍ର



---



## ଆର୍ଯ୍ୟ ଚେତନାର ଜାଗ୍ରତ ଜ୍ୟୋତି— ସ୍ୱାମୀ ଦୟାନନ୍ଦ ସରସ୍ୱତୀ

ସେଦିନ ରାତିଟି ଥିଲା ଶିବରାତ୍ରି । ଶିବରାତ୍ରିରେ ଭକ୍ତମାନେ ଉଜାଗର ରହି ମହାଦେବଙ୍କୁ ପୂଜା କରନ୍ତି । ଧର୍ମପ୍ରାଣ ପିତା ପୁତ୍ରକୁ ସଙ୍ଗରେ ଧରି ଗଲେ ଶିବମନ୍ଦିରକୁ । ଆଗରୁ ପୁଅ ଆଗରେ ବାପା ବହୁବାର ହିନ୍ଦୁ ଦେବଦେବୀଙ୍କର ମହିମା ବର୍ଣ୍ଣନା କରିଛନ୍ତି । ପୁଅ ମଧ୍ୟ ଧର୍ମପ୍ରାଣ ଥିବାରୁ ବାପାଙ୍କ କଥା ମନଦେଇ ଶୁଣେ । ବାପାଙ୍କ କଥାରେ ପ୍ରତିବାଦ ନକଲେବି ତାର କୋମଳ ମନରେ ଅସଂଖ୍ୟ ସନ୍ଦେହ ଜାଗିଉଠେ । ପିତାଙ୍କୁ ପଚାରିବା ପାଇଁ ସେ ସମୟ ପାଏନାହିଁ କି ତାର ସାହସ ହୁଏନାହିଁ । ସେଦିନ ଶିବରାତ୍ରିରେ ବାପ ପୁଅ ମନ୍ଦିର ଭିତରେ ପ୍ରବେଶ କଲେ । ବହୁଲୋକ ଜାଗର ଜାଳୁଥିଲେ । ସାରାସ୍ଥାନ ଲୋକାରଣ୍ୟ । ଜଳନ୍ତା ଦୀପଗୁଡ଼ିକ ଆକାଶର ତାରାପରି ଦେଖାଯାଉଥିଲେ । ବାପ ପୁଅକୁ କହିଗଲେ ଜାଗର ଜାଳିବାପାଇଁ । ସତର୍କ କରି କହିଥିଲେ, 'ଶୋଇପଡ଼ିଲେ ସମସ୍ତ ଧର୍ମ ନଷ୍ଟହୋଇଯିବ । ଅନିଦ୍ରା ରହି ଜାଗର ଜାଳିଲେ ମହାଦେବ ସନ୍ତୁଷ୍ଟ ହେବେ ଏବଂ ଅଶେଷ କଲ୍ୟାଣ ସାଧିତ ହେବ ।' ବାଧିତ ପୁଅ କ'ଣ ବାପାଙ୍କ ଉପଦେଶ ଅମାନ୍ୟ କରିବ ? ସରଳ ବାଳକ ମନରେ ବାପାଙ୍କ ଉପଦେଶ ଗଭୀର ରେଖାପାତ କଲା । ସେ ଏକ ମନ ଏକ ଲକ୍ଷ୍ୟରେ ଜାଗର ଜାଳି ବସିଲା ।

ରାତି ଘନେଇ ଆସିଲା । ଦେଖୁ-ଦେଖୁ ୧୦ଟା ବାଜିଲା । କ୍ରମେ ରାତି ଅଧହେଲା । ବାଳକ ଆଖିରେ ନିଦ ଭରିଗଲା । ସେ ଟିକିଏ ଶୋଇପଡ଼ନ୍ତା କି !! କିନ୍ତୁ ବାପା ଯେ କହିଛନ୍ତି ଶୋଇପଡ଼ିଲେ ଅଧର୍ମ ହେବ ବୋଲି । ନିଦ ନହେବାପାଇଁ ପିଲାଟା ବାରମ୍ବାର ଥଣ୍ଡା ଜଳରେ ଆଖି ଧୋଉଥିଲା; ମାତ୍ର ନିଦଟା ତଥାପି ମାଡ଼-ମାଡ଼ ଆସୁଥିଲା । ପିଲାଟା ବଡ଼ କଷ୍ଟ ଅନୁଭବ କଲା । ଏହି ସମୟରେ ବାପା ମେଳା ପରିକ୍ରମା କରି ଆସି ସେଠାରେ ପହଞ୍ଚିଲେ । ପୁଅ ପାଖେ କିଛି ସମୟ ବସି ରହିଲେ । ତାଙ୍କ ଆଖିକୁ ବି ନିଦ ଆକ୍ରମଣ କଲା । ସେ ସମ୍ଭାଳି ନପାରି ସେହି ମାଟିଚଟାଣରେ ଶୋଇପଡ଼ିଲେ । ଏଣେ ମନ୍ଦିରର କର୍ମଚାରୀମାନଙ୍କ ମଧ୍ୟରୁ ଅନେକେ ନିଦରେ ଢଳି ହେଲେଣି । ଯେଉଁ ଭକ୍ତବୃନ୍ଦ ଜାଗର ଜାଳୁଥିଲେ ସେମାନଙ୍କ ମଧ୍ୟରୁ କେହି-କେହି ମଧ୍ୟ ଶୋଇଗଲେଣି । ଲୋକ ସମାଗମ ପତଳା ପଡ଼ି ଆସିଲାଣି । ଜାଗର ଜାଳିବାର ଆନନ୍ଦ ଉଦ୍ଦୀପନା ଆଉ ନାହିଁ । ପୁଅ ତ ସବୁ ଦେଖୁଥିଲା, ତା ମନରେ ହଠାତ୍ ଏକ ଭାବାନ୍ତର ଆସିଲା । ଏତେ ଲୋକ ତ ଶୋଇପଡ଼ିଲେଣି ମୋ କେତେବେଳେଯାଏ ଚେଇଁ ରହିବ ? ଏପରିକି ନିଜର ବାପା ମଧ୍ୟ ଶୋଇଲେଣି । ସେ କ'ଣ ଭାବିଲା କେଜାଣି ହଠାତ୍ ବାପାଙ୍କୁ ନିଦରୁ ଉଠାଇ ଦେଲା । ଚଉଦ ବର୍ଷର ବାଳକ । ମୁଣ୍ଡରେ ତାର ଅସରନ୍ତି ପ୍ରଶ୍ନର ଝଡ଼ ।

ସେ ଆଗରୁ ବାପାଙ୍କଠାରୁ ଶୁଣିଥିଲା, ପୁରାଣରୁ ମଧ୍ୟ ଜାଣିଥିଲା ଯେ ମହାଦେବ ହେଉଛନ୍ତି ଦେବତାମାନଙ୍କର ରାଜା । ସେ କୈଳାସର ଅଧିକାରୀ ତଥା ସର୍ବଶକ୍ତିମାନ ପରମେଶ୍ୱର । କିନ୍ତୁ ଏଠାରେ ସେ କଣ ଦେଖୁଛି ? ସେହି ମହାଦେବଙ୍କୁ ବେଢ଼ାଖଣ୍ଡିଏ କରି ପୂଜକ ତଥା ଭକ୍ତଗଣ ଗାଢ଼ନିଦ୍ରାରେ ଅଭିଭୂତ । ମୂଷାଗୁଡ଼ାକ ଖେଳକୌତୁକ କରି ମହାଦେବ ଲିଙ୍ଗ ଉପରେ ଦୌଡ଼ା ଦୌଡ଼ି କରୁଛନ୍ତି ଏବଂ ଠାକୁରଙ୍କୁ ଦିଆଯାଇଥିବା ଭୋଗ ଖାଇଯାଉଛନ୍ତି !! ଏ ସବୁ ଦେଖି ବାଳକ ମନରେ ବହୁ ପ୍ରଶ୍ନ ଉଠିଲା । ପ୍ରଶ୍ନଗୁଡ଼ିକ ପଚାରିବ କାହାକୁ ? କିଏବା ତାର ଉପଯୁକ୍ତ ଉତ୍ତର ଦେବ ? ହଠାତ୍ ବାପାଙ୍କୁ ନିଦରୁ ଉଠାଇ ଦେଲା । ଗୋଟାକ

ପରେ ଗୋଟାଏ ପ୍ରଶ୍ନ ପଗ୍ଚରି ବ୍ୟତିବ୍ୟସ୍ତ କରି ପକାଇଲା । ବାପା କୌଣସି ପ୍ରଶ୍ନର ଠିକ୍ ଉତ୍ତର ଦେଇ ପାରିଲେ ନାହିଁ । ବିରକ୍ତରେ କହିଲେ, "ଏପରି ଅବାନ୍ତର ପ୍ରଶ୍ନ ପଗ୍ଚରିବାର ଉଦ୍ଦେଶ୍ୟ କଣ ବାବା ?" ମାତ୍ର ଯେଉଁ ବାଳକଟି ଭବିଷ୍ୟତ ଭାରତର ପ୍ରାଣପ୍ରତିଷ୍ଠା କରିବ ସେ କ'ଣ ଏଥିରେ ଦବିଯିବ ? ସେ ଗମ୍ଭୀର ଭାବରେ ପୁଣି ପ୍ରଶ୍ନକଲା, "ପିତା ଏହା କ'ଣ ସମ୍ଭବ ? ସମଗ୍ର ବିଶ୍ୱର କର୍ତ୍ତା, ସର୍ବଶକ୍ତିମାନ ପରମେଶ୍ୱର ଏହି ଲିଙ୍ଗ ଭିତରେ ଅଛନ୍ତି ? ତା ହେଲେ ମୂଷାଗୁଡ଼ାକ ତାଙ୍କ ଉପରେ ମନଇଚ୍ଛା ବ୍ୟବହାର କରୁଅଛନ୍ତି କିପରି ? କି ସାହସରେ ଠାକୁରଙ୍କ ଭୋଗ ଖାଇ ଦେଉଛନ୍ତି ?" ବାପା ଭାବିଲେ ପିଲା ପୁଅଟା କ'ଣ ନାସ୍ତିକ ପାଲଟି ଗଲା ନା କ'ଣ ? ସେ ପିଲାକୁ ବୁଝାଇବା ପାଇଁ ଚେଷ୍ଟାକଲେ । ଶେଷରେ କହିଲେ—ସେହି ପିତୁଳା ବେଦଜ୍ଞ ବ୍ରାହ୍ମଣମାନଙ୍କ ଦ୍ୱାରା ପବିତ୍ର ହୋଇଛି ଏବଂ ସଞ୍ଜୀବନୀ ମନ୍ତ୍ରରେ ମନ୍ତ୍ରିତ ହୋଇଛି । ତେଣୁ ସେଥିରେ ମହେଶ୍ୱର ବିରାଜମାନ କରୁଛନ୍ତି । ତୋର ଏପରି ପ୍ରଶ୍ନ ପଗ୍ଚରିବା ମହାପାପ ।

ବାଳକର ସରଳ ତଥା ଅନୁସନ୍ଧିତ୍ସୁ ମନ ଏଥିରେ ସନ୍ତୁଷ୍ଟ ହେଲାନାହିଁ । ବାପାଙ୍କର ଯୁକ୍ତିଗୁଡ଼ିକ ଭାରି ହାଲୁକା-ହାଲୁକା ବୋଧହେଲା । ସେ ଅବିଶ୍ୱାସୀ ହୋଇପଡ଼ିଲା । କାଠ ପଥରର ମୂର୍ତ୍ତି ପାଇଁ ସେ ଉପବାସ କରିବ ନାହିଁ । ଉଠିଗଲା ସେଠାରୁ ବାଳକ । ସତ୍ୟ ଅନୁସନ୍ଧାନରେ ତାର ମନ ବ୍ୟଗ୍ରହୋଇ ପଡ଼ିଲା । ସେହି ଦିନ-ଠାରୁ ବହୁ ଗୁଣୀ, ମାନୀ ଲୋକଙ୍କୁ ସେ ଏ ବିଷୟରେ ପଗ୍ଚରିଛି । କିନ୍ତୁ କାହାଠାରୁ ଠିକ୍ ଉତ୍ତର ପାଇଲା ନାହିଁ । ଏହିପରି ଅବସ୍ଥାରେ ବାଳକର ଭଉଣୀ ହଇଜାରେ ପ୍ରାଣ ହରାଇଛି ଠିକ୍ ବର୍ଷକପରେ । ପିତୃବ୍ୟ ହଇଜାରେ ମରିଛନ୍ତି । ସଂସାର ପ୍ରତି ବାଳକର ଅଶ୍ରଦ୍ଧା ବଢ଼ି-ବଢ଼ି ଗଲା । ମନରେ ଆଲୋଡ଼ନ । ଖେଳିବା ବୁଲିବାରେ ମନ ଲାଗିଲାନାହିଁ । ବହୁକଥା ଚିନ୍ତା କରି-କରି ଦିନେ ରାତିରେ ଘରଛାଡ଼ି ସେ ଆଗେଇଲା । ପିଲା ପୁଅଟା, ବାଇଆ ପରି ହେଉଛି କାହିଁକି ? ବାପା ବଡ଼ ବିଚଳିତ ହୋଇ ପଡ଼ିଲେ । ବହୁତ ଖୋଜା-

ଖୋଜ କଲେ । ବନ୍ଧୁ ବାନ୍ଧବଙ୍କୁ ବି ଖବର ଦେଲେ, ଖୋଜିବା ପାଇଁ । ବାପା ଭାବିଲେ, ପୁଅକୁ ସଂସାରୀ କରିଦେଲେ ବୋଧହୁଏ ମନଟା ତାର ପରିବର୍ତ୍ତନ ହୋଇଯିବ । ବହୁ ଖୋଜାଖୋଜି କରି ପୁଅକୁ ଘରକୁ ଆଣିଲେ । ମାତ୍ର ବାଲିବନ୍ଧ କି ସମୁଦ୍ରର ଜୁଆରକୁ ଅଟକାଇ ପାରେ ? ପିଲାଟି ଅଳ୍ପ କିଛୁଦିନ ଘରେ ରହିଛି କି ନାହିଁ ପୁଣି ଘରଛାଡ଼ି ପଳାଇଲା । ଏଥରକ ସେ ଆଉ ଫେରିଲା ନାହିଁ । ୧୮୪୫ ମସିହାରୁ ୧୮୯୦ ମସିହା ପର୍ଯ୍ୟନ୍ତ ଭାରତର ବଣ ଜଙ୍ଗଲ, ପାହାଡ଼, କାନ୍ତାରରେ ସେ ବୁଲିବାକୁ ଲାଗିଲା । କେତେବେଳେ ହିମାଳୟର ପାଦଦେଶରେ ତ କେତେବେଳେ ବିନ୍ଧ୍ୟ ଆରାବଳୀ ଅରଣ୍ୟ ମଧ୍ୟରେ; ପୁଣି କେତେବେଳେ ଗଙ୍ଗାଯମୁନାର ତୀରବର୍ତ୍ତୀ ଅଞ୍ଚଳରେ ତ କେତେବେଳେ ରାଜସ୍ଥାନର ଦୁର୍ଗମ ମରୁଭୂମିରେ ବିଚରଣ କରିବାକୁ ଲାଗିଲା । ବହୁ ସାଧୁ, ସନ୍ଥଙ୍କ ସାକ୍ଷାତ ଲାଭକଲା । ମାତ୍ର ପିତୁଳାପୂଜା ସମ୍ବନ୍ଧରେ ପ୍ରକୃତ ତଥ୍ୟ କେହି କହିପାରିଲେ ନାହିଁ । ସେମାନଙ୍କଠାରୁ ଯାହା ଶୁଣିଲା, ସେଥିରେ ମନ ଆଦୌ ମାନିଲା ନାହିଁ । ବୟସ ବଢ଼ି-ବଢ଼ି ଚାଲିଲା । ସେ ଯୌବନରେ ପଦାର୍ପଣ କଲା । ସଂସ୍କୃତ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଲାଭ କଲା ।

୧୮୬୦ ମସିହାର କଥା । ବଣ, କାନ୍ତାରରେ ବୁଲୁବୁଲୁ ଅପ୍ରତ୍ୟାଶିତ ଭାବରେ ଜଣେ ଯୋଗୀଙ୍କୁ ସାକ୍ଷାତକଲା । ଯୋଗୀ ଅନ୍ଧ; ମାତ୍ର ଅଗାଧ ପାଣ୍ଡିତ୍ୟର ଅଧିକାରୀ । ନାମ ବିରଜାନନ୍ଦ । ଯୋଗୀଙ୍କୁ ବହୁ ଜଟିଳ ଓ କଠିନ ପ୍ରଶ୍ନର ସମ୍ମୁଖୀନ ହେବାକୁ ହେଲା । ଯୋଗୀ ଯୁବକଙ୍କୁ ଧୀରସ୍ଥିର ଭାବରେ ଆସନ ଗ୍ରହଣ କରିବାକୁ ଆଦେଶ ଦେଲେ । ତାପରେ ଆଳାପ, ଭାବର ଆଦାନ ପ୍ରଦାନ ଚାଲିଲା । ଯୋଗୀ କହିଲେ, 'ବନ୍ଧୁ, ଦେଶରେ ଅନ୍ଧବିଶ୍ୱାସ ଭରି ରହିଛି । ଶିକ୍ଷାର ବଡ଼ ଅଭାବ । ଲୋକେ କିଛି ଜାଣି ପାରୁନାହାନ୍ତି । ଅତ୍ୟଧିକ ଜାତିଆଣି-ଭାବ ନେଇ ଘୃଣା ବି କରୁଛନ୍ତି । ମନୁଷ୍ୟ ଯେ ଈଶ୍ୱରଙ୍କ ସର୍ବଶ୍ରେଷ୍ଠ ଅବଦାନ ଏ କଥା ସେମାନେ ବୁଝୁନାହାନ୍ତି । ତୁମେ ଯଦି ସତ୍ୟ ଅନୁସନ୍ଧାନ କରିବାକୁ ଚାହୁଁଛ, ଭଗବାନ ସମ୍ବନ୍ଧୀୟ ଜ୍ଞାନ ହାସଲ

କରିବାକୁ ଚାହୁଁଛ ତେବେ ବେଦାଧ୍ୟୟନ କର । ମହାଭାରତ ପରର ସାହିତ୍ୟ ପାଠକର । ତାର ପରବର୍ତ୍ତୀ ସାହିତ୍ୟ ପାଠ କରନାହିଁ । କାରଣ ଏଗୁଡ଼ିକ ସଂକୀର୍ଣ୍ଣମନା ଅନ୍ଧବିଶ୍ୱାସୀଙ୍କ ଦ୍ୱାରା ରଚିତ । ବେଦରେ ଭାରତ ଉଦ୍ଧାରର ପ୍ରକୃତ ତତ୍ତ୍ୱ ନିହିତ ଅଛି ।” ଯୋଗୀ ବିରଜାନନ୍ଦଙ୍କ ଉପଦେଶ ତାଙ୍କ ମନରେ ଗଭୀର ଛାପ ପକାଇଲା । ସେ ତାଙ୍କଦ୍ୱାରା ପୂର୍ଣ୍ଣ ଅନୁପ୍ରାଣିତ ହେଲେ ଏବଂ ସେହି ଦିନଠାରୁ ଶିଷ୍ୟତ୍ୱ ଗ୍ରହଣ କରି ସନ୍ନ୍ୟାସ ବ୍ରତ ଅବଲମ୍ବନ କଲେ । ପିତୃଦତ୍ତ ନାମ ମୂଳଶଙ୍କର ପରିବର୍ତ୍ତେ ନୂତନ ନାମ ଧାରଣ କଲେ । ସେହି ଦିନଠାରୁ ସେ ପିତୁଳା ପୂଜା, ଅସ୍ପୃଶ୍ୟତା, ଅନ୍ଧବିଶ୍ୱାସ, ବାଲ୍ୟବିବାହ, ବିଦେଶ ଗମନରେ ଜାତିଯିବା ବିରୁଦ୍ଧରେ ମହତବାଣୀ ପ୍ରଚାର କରିବାକୁ ଲାଗିଲେ । ହିନ୍ଦୁ ଧର୍ମରୁ ଚାଲିଯାଇ ହିନ୍ଦୁ ଧର୍ମ ଭିତରେ ରହିବା ସଂସ୍କାରରେ ମନପ୍ରାଣ ଢାଳିଦେଲେ । ୧୮୬୪ ମସିହାରୁ ୧୮୮୩ ମସିହା ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ସାରା ଭାରତବର୍ଷ ବୁଲି ବୁଲି ବୁଲିଲେ । ସ୍ଥାନେ ସ୍ଥାନେ ସଭାସମିତି କରି ଜନ ସମାଜକୁ ବୁଝାଇବାରେ ଲାଗିଲେ ‘ଏ ଦେଶ ଅଜ୍ଞତା, ଅନ୍ଧବିଶ୍ୱାସରେ ଭରି ଯାଇଛି । ମୁଁ ଆସିଛି ସେମାନଙ୍କୁ ପ୍ରତ୍ୟେକ ଦାସତ୍ୱରୁ ମୁକୁଳେଇ ସ୍ୱାଧୀନତା ପାଇବାର ପନ୍ଥା ଦେଖାଇବି ।’ ତାଙ୍କର ଦୃଢ଼ତା ହେତୁ ସେ ବହୁ ବିରୋଧର ସମ୍ମୁଖୀନ ହୋଇଥିଲେ । କିନ୍ତୁ ସମସ୍ତ ବିରୋଧକୁ ସେ ଓଜସ୍ୱିନୀ ଭାଷଣ ଦ୍ୱାରା ଖଣ୍ଡନ କରି ଜୟଯୁକ୍ତ ହୋଇଥିଲେ । ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବାରେ ସେ ଅଗ୍ରଣୀ ହୋଇ ପଡ଼ିଲେ । ସଭା ସମିତି କରି କେତେଲୋକଙ୍କୁ ବୁଝାଇବେ ? ତେଣୁ ସଂସ୍କୃତ ଭାଷାରେ ‘ସତ୍ୟାର୍ଥ ପ୍ରକାଶ’ ନାମରେ ଏକ ପତ୍ରିକା ପ୍ରକାଶ କରି ନିଜ ଚିନ୍ତାଧାରାର ସମସ୍ତ ତଥ୍ୟ ପ୍ରକାଶ କଲେ । ଜନସାଧାରଣ ବୁଝିପାରିବାଭଳି ସରଳ ହିନ୍ଦି ଭାଷାରେ ଏହା ପ୍ରକାଶ କଲେ ଓ ପ୍ରଚାର କଲେ । ସେତେବେଳେ ରକ୍ଷଣଶୀଳ ହିନ୍ଦୁମାନଙ୍କ ଦୋଷରୁ ବହୁ ନୀଚ ହିନ୍ଦୁ ଅନ୍ୟ ଧର୍ମ ଗ୍ରହଣ କରୁଥିଲେ । ଏହାଦ୍ୱାରା ବିରାଟ ହିନ୍ଦୁ ସମାଜ ବିପଦର ସମ୍ମୁଖୀନ ହୋଇଥିଲା । ତେଣୁ ସେ ୧୮୭୫ରେ ‘ଆର୍ଯ୍ୟସମାଜ’ ପ୍ରତିଷ୍ଠା କରି ହିନ୍ଦୁ ଧର୍ମକୁ ରକ୍ଷାକଲେ ।

ସେତେବେଳେ ଇଂରେଜମାନେ ନିଜ ଶିକ୍ଷା ଓ ସଭ୍ୟତାକୁ ଉତ୍କୃଷ୍ଟ ମନେକରି ଭାରତୀୟ ଧର୍ମ ଓ ସଭ୍ୟତାକୁ ତୁଚ୍ଛ ମନେକରୁଥିଲେ । ଭାରତୀୟମାନେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାଦ୍ୱାରା ପ୍ରଭାବିତହୋଇ ନିଜ ଧର୍ମ ଓ ସଭ୍ୟତାକୁ ହୀନ ମନେକରୁଥିଲେ । ହୀନମନ୍ୟତା ଭାରତର ଅବନତିର ମୁଖ୍ୟକାରଣ ଜାଣିପାରି ସେମାନଙ୍କର ମନରେ ଆତ୍ମ-ପ୍ରତ୍ୟୟ ସୃଷ୍ଟିକରିବା ପାଇଁ ସେ ବଜ୍ରଗମ୍ଭୀରସ୍ୱରରେ ପ୍ରଚାର କଲେ: "ବିଜ୍ଞାନରେ ପାଶ୍ଚାତ୍ୟବାସୀ ଉନ୍ନତ ହେଲେହେଁ ଦର୍ଶନ ଓ ଧର୍ମ ଶାସ୍ତ୍ରରେ ସେମାନେ ଶିଶୁ । ପୁଣ୍ୟମୟ ପ୍ରାଚୀନ ସଭ୍ୟଦେଶ ମହାନ ଭାରତରୁ ଜ୍ଞାନର ବାର୍ତ୍ତା ମିଶର ଓ ଗ୍ରୀସ୍ ବାଟେ ଇଉରୋପକୁ ଯିବାଦ୍ୱାରା ସେମାନେ ଆଧୁନିକ ବିଜ୍ଞାନରେ ଏତେ ଉନ୍ନତି କରିପାରିଛନ୍ତି । ବେଦରେ ସମସ୍ତ ବିଜ୍ଞାନର ବୀଜ ନିହିତ ଅଛି, ତେଣୁ ବେଦାଧ୍ୟୟନ ଭାରତୀୟମାନଙ୍କର ପ୍ରଧାନ କର୍ତ୍ତବ୍ୟ ।"

ଏହାସତ୍ତ୍ୱେ ଦଳିତ ଜନତାକୁ ସେ ଉଚ୍ଚସ୍ଥାନ ଦେଉଥିଲେ । ପାଶ୍ଚାତ୍ୟ ଶିକ୍ଷାର କେତେକ ଦିଗ ତଥା ଜାତୀୟତା ଭାବକୁ ସେ ଭଲ ପସନ୍ଦ କରୁଥିଲେ । ତାଙ୍କ ମତରେ ଜାତିଭେଦ ପ୍ରଥା ହିନ୍ଦୁ ଜଗତର ଏକ ପ୍ରଧାନ କଳଙ୍କ । ତାଙ୍କ ଲେଖାରେ ସ୍ୱାଧୀନତାର ମୂଳମନ୍ତ୍ର ନିହିତ ଥିଲା । ୧୯୦୬ ମସିହାରେ କଲିକତା କଂଗ୍ରେସରେ ଯେଉଁ ସ୍ୱରାଜ ଶବ୍ଦ ଉଚ୍ଚାରିତ ହୋଇଥିଲା ତାର ବହୁ ପୂର୍ବରୁ ଓ ଦେଶରେ ଭାରତୀୟ ଜାତୀୟକଂଗ୍ରେସ
ହୋଇଥିଲା ତାର ବହୁ ପୂର୍ବରୁ ଓ ଦେଶରେ ଭାରତୀୟ ଜାତୀୟକଂଗ୍ରେସ
ପ୍ରତିଷ୍ଠା ପୂର୍ବରୁ ୧୮୮୨ ମସିହାରେ ସେ ନିଜ ଭାଷଣରେ ସ୍ୱରାଜ ଓ ସ୍ୱଦେଶୀ ଶବ୍ଦ ବ୍ୟବହାର କରି ତାର ତାତ୍ପର୍ଯ୍ୟ ଲୋକମାନଙ୍କୁ ବୁଝାଇ-ଥିଲେ ଏବଂ ବିଦେଶୀ ଜିନିଷ ବ୍ୟବହାରକୁ ଘୃଣା କରିବାକୁ ଶିଖାଇଥିଲେ । ହିନ୍ଦୀଭାଷାକୁ ଜାତୀୟଭାଷା କରାଯିବା ପାଇଁ ଜୋର୍ ଦେଇଥିଲେ । ସେ କହୁଥିଲେ "ଯେଉଁ ଦେଶରେ ଅର୍ଦ୍ଧେକରୁ ବେଶି ଲୋକ ଅସ୍ପୃଶ୍ୟ ସେ ଦେଶକୁ ସ୍ୱାଧୀନତା ଆସିବ କିପରି ? ତେଣୁ ଆର୍ଯ୍ୟ ସମାଜ ସୃଷ୍ଟିକରି ଛୁଆଁ-ଅଛୁଆଁ ଭେଦଭାବ ଦୂରକରି ସେ ହିନ୍ଦୁ ଧର୍ମର ପ୍ରଭୂତ ଉନ୍ନତି ସାଧନ କଲେ ।

ଏହି ମହାନ୍ ଚିନ୍ତାନାୟକ ଓ ମହାନ୍ ଦେଶପ୍ରେମୀ ଯୋଗୀ ହେଉଛନ୍ତି ସ୍ୱାମୀ ଦୟାନନ୍ଦ ସରସ୍ୱତୀ । ଆଜକାଲି ଦେଶର ବହୁ ସ୍ଥାନରେ ଡି. ଏ. ଭି. ଅନୁଷ୍ଠାନମାନ ଗଢ଼ି ଉଠି ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ବାହକ ହୋଇ ତାଙ୍କର ମହିମା ଗାନ କରୁଅଛି । ଯୁଗେ-ଯୁଗେ ଦୟାନନ୍ଦ ଆର୍ଯ୍ୟଚେତନାର ଜାଗ୍ରତ ଜ୍ୟୋତି ରୂପେ ବିରାଜମାନ କରିବେ—ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

---



## ବିଶ୍ୱକବି
## ରବୀନ୍ଦ୍ରନାଥ ଠାକୁର

ସେ ଥିଲେ ଜମିଦାର ଘରର ପିଲା । ପିଲାଦିନେ ବାପ ମାଁ ତାଙ୍କୁ କଡ଼ା କଟକଣାରେ ଭିତରେ ରଖିଥିଲେ । ପାଠପଢ଼ା ବୟସ ହେବାରୁ ବାପା ତାର ନାମ ଗାଁ ଚାଟଶାଳୀରେ ଲେଖାଇଦେଲେ । ପିଲାଟା ଅବଧାନଙ୍କ ବେତକୁ ଖୁବ୍ ଡରୁଥିଲା । ତେଣୁ ଦିନେ ଗଲେ ଦିନେ ମାଉ ନଥିଲା । ସବୁବେଳେ ଖାଲି ଖେଳିବାରେ ମନ । ଫାଙ୍କ ନିମଳରେ ଖେଳିବାକୁ ପ୍ରକୃତି କୋଳରେ ନାଚିବାକୁ ବୁଲିବାକୁ ସେ ଭାରି ସୁଖ ପାଉଥିଲା । ଚାଟଶାଳୀକୁ ଗଲାନାହିଁ । ବାପା ବାଧ୍ୟକଲେ ଜ୍ୱର ହେଉଛି ବୋଲି ପେଖନା କରେ । ବେଳେ-ବେଳେ ଜୋତା ଦୁଇଟାକୁ ଓଦା କରି ଦେଉଥିଲା । ବାପା ଜମିଦାର; ବଡ଼ ଚିନ୍ତିତ ହେଲେ । ମନେକଲେ, ପିଲାଟା କଣ ମୂର୍ଖ ହେବ ? ତେବେ ଜମିଦାରୀ ବୁଝିବ କିଏ ? ଗାଁ ସ୍କୁଲରୁ ଉଠାଇଆଣି କଲିକତାର ସେଣ୍ଟ-ଜାଭିଅର ସ୍କୁଲରେ ନାଁ ଲେଖାଇଲେ । ସ୍କୁଲର ନିୟମ କାନୁନପ୍ରତି ପିଲା ବୀତସ୍ପୃହ ଥିଲା । ଘୋଷା ପାଠ ପ୍ରତି ତାର ଅନାଦର ଥିଲା । ପାଠପଢ଼ା କହିଲେ ସେ ଭାରି ଡରୁଥିଲା । ସେଠାକୁ ଦୁଇଚାରିମାସ ଗଲା, ତା'ପରେ ଆଉ ଗଲାନାହିଁ । ବୟସ ତ ଆଉ ବସିନାହିଁ, ପିଲାର ବୟସ

ବଢ଼ି ବଢ଼ି ଗଲା । ତାକୁ ହେଲା ୧୭ବର୍ଷ । ବାପା ମା'ଙ୍କର ଭାବନା ଲାଗିଲାଣି, ବନ୍ଧୁବାନ୍ଧବଙ୍କର ଚିନ୍ତା, କଣ କରାଯିବ ? ପିଲାଟାତ ଇଂରାଜୀ ଢାଞ୍ଚାରେ ପାଠ ପଢ଼ିବାକୁ ନାରାଜ ।

ସେତେବେଳେ ଇଂରେଜମାନଙ୍କ ନିଜ ଶାସନ ଓ ଖ୍ରୀଷ୍ଟୀୟାନ୍ ପାଦ୍ରୀମାନଙ୍କ ପ୍ରଭାବରେ ହିନ୍ଦୁ ଧର୍ମ ଓ ସଂସ୍କୃତି ସଙ୍କଟଜନକ ଅବସ୍ଥାରେ ପଡ଼ିଥିଲା । ଭାରତୀୟ ପଣ୍ଡିତମାନେ ଖ୍ରୀଷ୍ଟୀୟାନ ଧର୍ମପ୍ରତି ଆକୃଷ୍ଟ ହେଉଥିଲେ । ତା' ପ୍ରତିକ୍ରିୟାରେ ବ୍ରାହ୍ମସମାଜର ସୃଷ୍ଟି ହୋଇଥିଲା । ବାପା ବ୍ରାହ୍ମସମାଜର ନେତୃତ୍ୱ ନେଇଥିଲେ । ତାଙ୍କର ଖୁବ୍ ନାମ ଥିଲା । ଟଙ୍କା ପଇସା ବି ଅମାପ ଥିଲା । ଅଖଣ୍ଡ ପ୍ରତିପତ୍ତି ଥିଲା । ପିଲାଙ୍କୁ ଯେ କୌଣସି ଉପାୟରେ ମନୁଷ୍ୟ କରିବାକୁ ପଡ଼ିବ । ତାର ବାହ୍ୟଜ୍ଞାନ ବୃଦ୍ଧି ନିମିତ୍ତ ହିମାଳୟ ଅଞ୍ଚଳରେ ପ୍ରକୃତିଦେବୀର ପ୍ରାଚର୍ଯ୍ୟ ମଧ୍ୟରେ କେତେଦିନ ବାପା ବୁଲାଇଲେ । ବାପାଙ୍କର ସାଙ୍ଗ ସାଥୀ ଅନେକ । ବହୁ ଚିନ୍ତା ଆଲୋଚନା ପରେ ନିଷ୍ପତ୍ତି ନିଆଗଲା ପିଲାକୁ ଇଂଲଣ୍ଡ ପଠାଇ ଦିଆଯିବ । ସେଠାରେ ସେ ଆଇନ୍ ପଢ଼ିବ । ବ୍ରାଇଟନ ସହର ପବ୍ଲିକ ସ୍କୁଲରେ ନାମ ଲେଖାଗଲା । ସେଠାରେ କେତେଦିନ ଆନନ୍ଦରେ କଟିଲା । ତା'ପରେ ତା'ର ନାମ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଲେଖାଗଲା । କିନ୍ତୁ ସେଠାରେ ମଧ୍ୟ ସେ କିଛି ଉନ୍ନତି କରିବାର ଦେଖାଗଲା ନାହିଁ । ୧୯ ବର୍ଷ ବୟସରେ ସେ ସ୍ୱଦେଶକୁ ଫେରି ଆସିଲା । ମାତ୍ର ଇଂଲଣ୍ଡରେ ଅବସ୍ଥାନ କାଳରେ ଯୁବକ ମହାନ୍ ଦାର୍ଶନିକ ତଥା ବିଦ୍ୱାନ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସିଥିଲେ । ବର୍କ ଓ ମାର୍କ୍ସଙ୍କ ଭାଷଣଦ୍ୱାରା ସେ ବିଶେଷ ଭାବରେ ପ୍ରଭାବିତ ହେଲେ । ସେକ୍ସପିଅରଙ୍କ ନାଟକ ଓ ବାଇରନଙ୍କ ପଦ୍ୟାବଳି ତାଙ୍କୁ ଅଭିଭୂତ କରି ପକାଇଥିଲା । ଦେଶ ପରିଭ୍ରମଣ କରି ସେ ତାଙ୍କର ଦୃଷ୍ଟିକୋଣକୁ ପ୍ରସାରିତ କରି ପାରିଥିଲେ । ବର୍ତ୍ତମାନ ଯୁବକଙ୍କୁ ବାଇଶ ବର୍ଷ । ଭାରତରେ ଜାତିଭେଦ ପ୍ରଥା କଠୋର ଥିଲା । ପିତା ଓ ମାତାଙ୍କର ଇଚ୍ଛା ସେ ପୁଅକୁ ବିବାହ କରିଦେଲେ ତାଙ୍କ ମୁଣ୍ଡରୁ ଅଳିଆ ଯିବ ଓ

ପୁଅ ଜମିଦାରୀ ବୁଝାବୁଝି କରିବ । ସେମାନେ ଥିଲେ ଶ୍ରେଷ୍ଠ ବ୍ରାହ୍ମଣ । ତାଙ୍କ ଜାତିର ଲୋକସଂଖ୍ୟା ଅନୁପାତରେ ଭଲ କନ୍ୟାଟିଏ ମିଳିବା କଷ୍ଟକର । ତାଙ୍କ ଜମିଦାରୀର ଜଣେ କର୍ମଚାରୀର ଝିଅକୁ ବାପା ବିବାହ ଦେଲେ । କନ୍ୟାର ପାଠପଢ଼ା ପ୍ରାଇମେରୀ ପର୍ଯ୍ୟନ୍ତ ଓ ସେ ସୁନ୍ଦରୀ ନଥିଲା । ୧୮୮୩ରେ ବିବାହ କାର୍ଯ୍ୟ ଶେଷହେଲା । ପୁତ୍ର ପରବର୍ଷ ବ୍ରାହ୍ମସମାଜର ସେକ୍ରେଟାରୀ ହେଲେ । ୧୮୯୦ରେ ପୁତ୍ର ପୁନଃ ଇଂଲଣ୍ଡ ଯାତ୍ରାକଲେ । ସେ ସ୍ୱଭାବତଃ କବି ପ୍ରକୃତିର ଥିଲେ । ତେଣୁ କବିତା ଲେଖା ଚାଲିଲା । କୌଣସି ବିଦ୍ୟାଳୟ ଡିଗ୍ରୀ ତାଙ୍କର ନଥିଲା, ମାତ୍ର ସୃଜନଶୀଳ ଶକ୍ତି ଥିଲା ଅସୀମ । ୧୯୦୧ ମସିହାରେ ବଙ୍ଗଦର୍ଶନ ନାମକ ଏକ ପତ୍ରିକାର ସେ ହେଲେ ସମ୍ପାଦକ । ସେତେବେଳକୁ ସେ ଉପନ୍ୟାସ, କ୍ଷୁଦ୍ର ଗଳ୍ପ, ନାଟକ ଓ ପଦ୍ୟ ରଚନା କରିବାରେ ସିଦ୍ଧହସ୍ତ ହୋଇ ପଡ଼ିଥିଲେ । ତାଙ୍କର ଲେଖାଗୁଡ଼ିକ ଦେଶର ବଡ଼ ବଡ଼ ପତ୍ର ପତ୍ରିକାରେ ପ୍ରକାଶିତ ହେବାକୁ ଲାଗିଲା । ସାହିତ୍ୟ ଜଗତରେ ସେ ପ୍ରସିଦ୍ଧି ଲାଭ କରିବାରୁ ବଡ଼ ବଡ଼ ନାମଜାଦା ଲେଖକଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଲା ।

ସ୍କୁଲ୍ କଲେଜର ଶିକ୍ଷା ନିୟମଗୁଡ଼ିକ ତାଙ୍କୁ ଆଦୌ ଭଲ ଲାଗୁ ନଥିଲା । ପୁଣି ଇଂରେଜ ସ୍କୁଲର ପାଠପ୍ରତି ସେ ବୀତସ୍ପୃହ ଥିଲେ । ନିଜ ମନୋମତ ଗୋଟିଏ ବିଦ୍ୟା ଅନୁଷ୍ଠାନ ଗଢ଼ିବାପାଇଁ ସେ ସର୍ବଦା ଇଚ୍ଛାପୋଷଣ କରୁଥିଲେ । ଭାରତର ପୁରାତନ ପରମ୍ପରାକୁ ଅନୁସରଣ କରି ଗୋଟିଏ ଶିକ୍ଷାୟତନ ଗଢ଼ିବେବୋଲି ସେ ସର୍ବଦା ଆଗ୍ରହୀ ଥିଲେ । ତେଣୁ ନିଜ ପୁଅକୁ ମିଶାଇ ପ୍ରଥମେ ୫ ଜଣକୁ ନେଇ ଶାନ୍ତିନିକେତନରେ ବିଦ୍ୟାଳୟଟିଏ ବସାଇଲେ । ପ୍ରକୃତି ସହ ପୁରାପୁରୀ ସମ୍ପର୍କ ରଖିଲେ । ଇଂରେଜ ସ୍କୁଲଗୁଡ଼ାକୁ ସେ କଳ-କାରଖାନା ଭଳି ମନେ କରୁଥିଲେ । ସମାଜ ଓ ପ୍ରକୃତିରୁ ଅଲଗା ରହିବାର କଷ୍ଟ ସେ ଅନୁଭବ କରିଥିଲେ । ତେଣୁ ଶାନ୍ତିନିକେତନ ବିଦ୍ୟାଳୟ ସେ ପ୍ରତିଷ୍ଠା କରିଥିଲେ । ଏତିକିବେଳେ ତାଙ୍କର ପତ୍ନୀ ବିୟୋଗ ଘଟିଲା । ପରବର୍ଷ ବଙ୍ଗଭଙ୍ଗ ଆନ୍ଦୋଳନର ସୂତ୍ରପାତ ହେଲା ।

ସେ ସ୍ୱଦେଶୀ ଆନ୍ଦୋଳନଦ୍ୱାରା ବିଶେଷଭାବେ ଅନୁପ୍ରାଣିତ ହୋଇଥିଲେ । ସେହି ଦିନଠାରୁ ତାଙ୍କର ଲେଖାରେ ସ୍ୱଦେଶୀ ଭାବନା ବଳିଷ୍ଠ ରୂପ ଧାରଣ କଲା ।

୧୯୧୨ ମସିହାରେ ସେ ପୁଣି ଥରେ ଇଂଲଣ୍ଡ ଯାତ୍ରାକଲେ । ଇଂଲଣ୍ଡର ପ୍ରସିଦ୍ଧ କବି ୟେଟ୍‌ସ୍ ତାଙ୍କର କବିତା ସକଳ ପାଠକରି ବିମୋହିତ ହେଲେ ଏବଂ ସେଗୁଡ଼ିକ ନୂତନ ଦିଗ୍‌ଦର୍ଶନର କବିତା ବୋଲି ମତ ପ୍ରଦାନ କଲେ । ତାଙ୍କର ପଦ୍ୟ ସକଳ 'ଗୀତାଞ୍ଜଳି' ନାମ ଧାରଣ କରି ୟେଟ୍‌ସ୍‌ଙ୍କ ମୁଖବନ୍ଧ ସହ ୧୯୧୩ରେ ପ୍ରକାଶିତ ହେଲା । ସେହିବର୍ଷ ସେ ତାଙ୍କର ଏହି ବହି ପାଇଁ ପୃଥିବୀ ପ୍ରସିଦ୍ଧ ନୋବେଲ୍ ପୁରସ୍କାର ପାଇଲେ । ଏହି ମହାନ୍ କବି କିଏ ଜାଣ ? ସେ ହେଉଛନ୍ତି ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର । ଏ ସମୟ ପର୍ଯ୍ୟନ୍ତ ପ୍ରାଚ୍ୟଜଗତର କୌଣସି ବ୍ୟକ୍ତି ଏହି ମହାନ ପୁରସ୍କାର ଲାଭ କରି ନଥିଲେ । ବ୍ରିଟିଶ ସରକାର ତାଙ୍କୁ ନାଇଟ୍ ଉପାଧିରେ ଭୂଷିତ କଲେ । ମାତ୍ର ଦେଶଭକ୍ତ ରବୀନ୍ଦ୍ରନାଥ ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ହେତୁ ସେହି ଉପାଧି ୧୯୧୯ ମସିହାରେ ପ୍ରତ୍ୟାଖ୍ୟାନ କରିଥିଲେ ।

୧୯୨୧ ମସିହାରେ ରବୀନ୍ଦ୍ରନାଥ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କଲେ । ସେହିଦିନଠାରୁ ଦେଶ ବିଦେଶର ବହୁ ଜ୍ଞାନପିପାସୁ ଭାରତର ମହାନ୍ ସଂସ୍କୃତି ଓ ପରମ୍ପରା ପ୍ରତି ଆକୃଷ୍ଟ ହୋଇ ଏହି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଛନ୍ତି ଓ ସମଗ୍ର ପୃଥିବୀରେ ଭାରତର ଅତୀତ ଓ ବର୍ତ୍ତମାନର ଗରିମା ପ୍ରଦର୍ଶନ କରୁଅଛନ୍ତି ।

---




## ଭାରତୀୟ ସଂସ୍କୃତିର ଜୀବନ ଜ୍ୟୋତି

## ପଣ୍ଡିତ ମଦନମୋହନ ମାଳବ୍ୟ

୧୮୮୦ ମସିହାରେ ସେ ଏଲାହାବାଦର ମୁର୍ କଲେଜରେ ଅଧ୍ୟୟନ କରୁଥିଲେ । ସେତେବେଳେ ସେ କଲେଜର ପ୍ରିନ୍ସପାଲ୍ ଥିଲେ ହାରିସନ୍ ସାହେବ । ଯୁବକଙ୍କର ଇଂରାଜୀଭାଷାରେ ଦକ୍ଷତା ଥିଲା ଅସାଧାରଣ । ଜଣେ ଇଂଲଣ୍ଡୀୟ କାହିଁକି ବା ଏପରି ଇଂରାଜୀ କହିବ ? ଚେହେରା ଦେଖିବାକୁ ମଧ୍ୟ ଗୋରା ସାହେବପରି । ସେ ଜଣେ ଭାରତୀୟ ନା ଇଂଲଣ୍ଡୀୟ ଜାଣିହେବ ନାହିଁ । ତାଙ୍କର ଚେହେରାଟି ଏତେ ସୁନ୍ଦର ଥିଲା ଯେ ତାଙ୍କୁ ଗୋଟିଏ ଝିଅ ବେଶରେ ସଜାଇ ଦେଲେ ଝିଅ କି ପୁଅ ଚିହ୍ନି ହେବ ନାହିଁ । କଲେଜ ନାଟ୍ୟସଂଘ ସେ ବର୍ଷ ସେକ୍ସପିୟରଙ୍କ 'ମାର୍ଚେଣ୍ଟ ଅଫ୍ ଭେନିସ୍' ନାଟକ ମଞ୍ଚସ୍ଥ କରିଥିଲେ । ଯୁବକ ଜଣକ କେଉଁ ଭୂମିକାରେ ଅବତୀର୍ଣ୍ଣ ହେବେ ? ତାଙ୍କ ଚେହେରା ଓ ଇଂରାଜୀ ଭାଷାରେ ବ୍ୟୁତ୍ପତ୍ତି ହେତୁ ତାଙ୍କୁ ପୋର୍ସିଆ ଭୂମିକାରେ ଅଭିନୟ କରିବାକୁ ପଡ଼ିଥିଲା । ଅତି ଚମତ୍କାର ସେ ଅଭିନୟ । ସେତେବେଳେ ଦେଶରେ ଇଂରେଜ ଲୋକଙ୍କର ପ୍ରଭୁତ୍ୱ । ସବୁ ବଡ଼ ବଡ଼ ଚାକିରିରେ ଇଂରେଜ । ଇଂରେଜ ନାଟକ ଦେଖିବାକୁ ବଡ଼ ବଡ଼

ଇଂରେଜ ଲୋକଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଆମନ୍ତ୍ରିତ ଦର୍ଶକ ବୃନ୍ଦ ପୋର୍ସିଆ ଭୂମିକାରେ ଅଭିନୟ କରୁଥିବା ଯୁବକର ଅଭିନୟ କୌଶଳରେ ମୁଗ୍ଧ ହୋଇ ପଡ଼ିଲେ । ଯୁବକର ଇଂରାଜୀ ଉଚ୍ଚାରଣ ଏତେ ନିର୍ଭୁଲ ଥିଲା ଯେ ସେ ଭାରତୀୟ ନା ଇଂଲଣ୍ଡୀୟ ଚିହ୍ନି ପାରିଲେ ନାହିଁ । ନାଟକ ଶେଷ ହେଲା । ଆଲ୍ଲାହାବାଦ ହାଇକୋର୍ଟର ମୁଖ୍ୟ ବିଚାରପତି ଷ୍ଟ୍ରେଜି ନିକଟକୁ ଧାଇଁଯାଇ ପଚାରି ଦେଲେ, "ତୁମର ନାମ କଣ ?" ବାଳକ ଉତ୍ତର ଦେଲା 'ମଦନମୋହନ' । ବିଚାରପତି ବାଳକର ଅଭିନୟରେ ଚମତ୍କୃତ ହୋଇଥିଲେ । ଫୁସ୍‌ଫୁସ୍ କରି ହାରିସନ୍ ସାହେବଙ୍କ କାନରେ କଣ କହି ଚାଲିଗଲେ ।

ସେହି ଦିନଠାରୁ ମଦନମୋହନଙ୍କ ପ୍ରତି କଲେଜ ଅଧ୍ୟାପକମାନଙ୍କ ଶୁଭଦୃଷ୍ଟି ପଡ଼ିଲା । ମଦନର ଆର୍ଥିକ ଅବସ୍ଥା ସେତେ ଭଲ ନଥିଲା । ମଦନର ପାଣ୍ଡିତ୍ୟ ଓ ଚାଲିଚଲନରେ ହାରିସନ୍ ସାହେବ ସନ୍ତୋଷ ପ୍ରକାଶ କରିଥିଲେ । ସେ ତାକୁ ମାସିକ ପାଞ୍ଚ ଟଙ୍କା ବୃତ୍ତି ପ୍ରଦାନ କଲେ । ସେତେବେଳେ ପାଞ୍ଚ ଟଙ୍କାର ମୂଲ୍ୟ ଆଜିକାଲିର ଶହେ ଟଙ୍କାରୁ ବି ଅଧିକ ହେବ । ସେହି ପାଞ୍ଚଟଙ୍କାରୁ ସେ ଦୁଇଟଙ୍କା ନିଜ ଖର୍ଚ୍ଚ ପାଇଁ ରଖି ଅବଶିଷ୍ଟ ତିନିଟଙ୍କା ତାଙ୍କ ମାଆଙ୍କର ଖର୍ଚ୍ଚ ପାଇଁ ପଠାଇଦେଉଥିଲେ । ସେହି ଦୁଇ ଟଙ୍କାରେ ଭଜା ବୁଟ ଖାଇ ଗଙ୍ଗାଜଳ ପାନକରି ସେ ଜୀବନ କାଟୁଥିଲେ । ବି. ଏ. ପାସ୍ ପରେ ସେ କିଛି ଦିନ ଶିକ୍ଷକତା କରି-ଥିଲେ । କିନ୍ତୁ ଜନସାଧାରଣଙ୍କ ପାଇଁ କିଛି କାମ କରିବାକୁ ତାଙ୍କର ମନ ବଳିଲା । ୧୮୮୫ ମସିହା ଡିସେମ୍ବର ୨୭ ତାରିଖରେ ସାର୍ ଆଲନ୍ ଅକ୍ଟୋଭିଆନ ହିଉମ୍‌ଙ୍କ ଉଦ୍ୟମରେ 'ଭାରତୀୟ ଜାତୀୟ କଂଗ୍ରେସ' ଗଢ଼ାହେଲା । ମଦନମୋହନ ମାଆଙ୍କଠାରୁ ଅନୁମତି ନେଲେ । ହିଉମ୍‌ଙ୍କ କଂଗ୍ରେସ ଦଳରେ ଯୋଗଦେଲେ । ୧୮୮୬ ମସିହାରେ କଂଗ୍ରେସ ଅଧିବେଶନ କଲିକତାରେ ବସିଥିଲା । ସେଠାରେ ମଦନ-ମୋହନଙ୍କ ବାଗ୍ମୀତାରେ ସମସ୍ତ ଲୋକେ ତଟସ୍ଥ ହୋଇଗଲେ । ତାଙ୍କର ଖ୍ୟାତି ବଢ଼ିବାରେ ଲାଗିଲା ଓ ଭାରତ ଜାତୀୟ କଂଗ୍ରେସରେ ତାଙ୍କର ସ୍ଥାନ ପ୍ରତିଷ୍ଠିତ ହୋଇପାରିଲା । ୧୮୯୧ରେ ସେ ଓକିଲାତି ପାସ୍ କଲେ ।

୧୯୧୦ ମସିହା ପର୍ଯ୍ୟନ୍ତ ଓକିଲାତି କଲେ । ଓକିଲାତିରେ ମନଦେଲେ ମଧ୍ୟ ଦେଶ କଥା ସବୁବେଳେ ଚିନ୍ତାକରୁଥିଲେ । କ'ଣକଲେ ଭାରତ-ଲୋକେ ଅନ୍ଧାରରୁ ଆଲୁଅକୁ ଆସିବେ—ଏକଥା ତାଙ୍କ ମୁଣ୍ଡରେ ଘାରୁଥିଲା ।

୧୯୦୫ ମସିହା ଭାରତ ଇତିହାସର ଏକ ସନ୍ଧିକାଳ । ଏବର୍ଷ ଶ୍ରୀ ଅରବିନ୍ଦ ସ୍ୱଦେଶୀ ଆନ୍ଦୋଳନ ସାହାଯ୍ୟରେ ସ୍ୱାଧୀନତା ଆଣିବାର ସ୍ୱପ୍ନ ଦେଖିଥିଲେ । ମହାମନା ଗୋଖଲେ ଏବର୍ଷ ଗୃକର ଗୁଡ଼ି ଭାରତ ରାଜନୀତିରେ ଯୋଗ ଦେଲେ ଓ ହିନ୍ଦ୍ ସେବକ ସଂଘ ଗଠନ କଲେ । ବଙ୍ଗଭଙ୍ଗ ଆନ୍ଦୋଳନ ବଙ୍ଗଳାସମେତ ସମଗ୍ର ଭାରତବାସୀଙ୍କୁ ଆନ୍ଦୋଳିତ କଲା । ସନ୍ତ୍ରାସବାଦୀ ଆନ୍ଦୋଳନ ଜନ୍ମଲାଭ କଲା । କିନ୍ତୁ ଅପାଠୁଆ, ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଜନତା ଭାରତକୁ ମୁକ୍ତ କରିବେ କିପରି ? ତେଣୁ ମଦନମୋହନ ଭାରତର ମୁକ୍ତି ଚାହିଁଲେ ଶିକ୍ଷାଦ୍ୱାରା । ସେ ଦେଖିଲେ ଜାତି ହୀନମନ୍ୟ ଅବସ୍ଥାରେ ଅଛି । ଶିକ୍ଷାର ଆଲୋକ ନ ପାଇଲେ ତା ମନରୁ କୁସଂସ୍କାର ଦୂର ହେବ ନାହିଁ । ତେଣୁ ଶିକ୍ଷାର ଏକ ଟାଣୁଆ ମୂଳଦୁଆ ଦେଶରେ ପକାଇବାକୁ ଚେଷ୍ଟା କଲେ । ସମଗ୍ର ଭାରତ ବର୍ଷରେ ସେତେବେଳେ ମୋଟରେ ପାଞ୍ଚଟି ବିଶ୍ୱବିଦ୍ୟାଳୟ ଥିଲା । କାଶୀରେ ହିନ୍ଦୁ ସଂସ୍କୃତି ନେଇ ଏକ ବିଶ୍ୱବିଦ୍ୟାଳୟ ଗଠନ କରିବା-ପାଇଁ ସେ ଅବିରତ ଉଦ୍ୟମ କରିବାକୁ ଲାଗିଲେ । ଲୋକମାନ୍ୟ ତିଳକ ସେତେବେଳେ ଦେଶର ଅପ୍ରତିଦ୍ୱନ୍ଦ୍ୱୀ ନେତା । ଏହି ମହାନ କାର୍ଯ୍ୟରେ ତାଙ୍କୁ ସାହାଯ୍ୟକଲେ ଲୋକମାନ୍ୟ ତିଳକ ଓ ସ୍ୱାମୀ ରାମତୀର୍ଥ । ୧୯୦୯ ମସିହାରେ ଲାହୋର କଂଗ୍ରେସ ଅଧିବେଶନରେ ସେ ଭାରତ ଜାତୀୟ କଂଗ୍ରେସର ସଭାପତି ପଦ ଅଳଙ୍କୃତ କରିଥିଲେ । ତାପରେ ତାଙ୍କର ପ୍ରତିପତ୍ତି ବଢ଼ିବାରେ ଲାଗିଲା । ତତ୍ପରେ ଭାଇସରାୟ ଲେଜିସ୍ଲେଟିଭ କାଉନସିଲରେ ଦେଶସେବକ ଉଦାର-ପନ୍ଥୀ ଗୋଖଲେଙ୍କ ସହ ସେ କାମ କଲେ । କିନ୍ତୁ କାଶୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ପ୍ରଗାଢ଼ ଉଦ୍ୟମ ସର୍ବଦା ତାଙ୍କ ମନରେ ଲାଗି ରହିଥିଲା । ତେଣୁ ୧୯୧୬ ମସିହାରେ ଏକ କୋଟି ଟଙ୍କା

ବ୍ୟୟରେ ପବିତ୍ର ବସନ୍ତ ପଞ୍ଚମୀ ଦିନ ଗାନ୍ଧିଜୀଙ୍କ ଉପସ୍ଥିତିରେ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ମୂଳଦୁଆ ପଡ଼ିଲା । ମାଳବ୍ୟଙ୍କ ସ୍ୱପ୍ନ ସଫଳ ହେଲା । ସେ ଦିନ ପବିତ୍ର ଭାରତ ଭୂମିରେ ଯେଉଁ ବତିଟି ଜାଳିଲେ ତାହା ଶହଶହବର୍ଷ ଭାରତୀୟ ଜନଜୀବନକୁ ଆଲୋକିତ କରୁଥିବ । ବନାରସ ଭାରତୀୟ ସଂସ୍କୃତିର ମୂଳପିଣ୍ଡ ରୂପେ ପୁନଃ ଜାଗରିତ ହେଲା । ବର୍ତ୍ତମାନ ସମଗ୍ର ଭାରତରେ କାହିଁକି ସମଗ୍ର ଏସିଆ ମହାଦେଶରେ ଏହା ଏକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ରୂପେ ଦଣ୍ଡାୟମାନ ।





## ଶସ୍ତ୍ରରୁ ଶାସ୍ତ୍ରର ଜୀବନପନ୍ଥା
## ଶ୍ରୀ ଅରବିନ୍ଦ

ବନ୍ଦୀଘରେ ଭଗବାନ ଶ୍ରୀକୃଷ୍ଣ ଜନ୍ମଲାଭ କରି ସଂସାରରୁ ପାପର ମାତ୍ରା ଲାଘବ କରିଥିଲେ । ବନ୍ଦୀଘରେ ଇଂଲଣ୍ଡର ପ୍ରସିଦ୍ଧ କବି ଜନ୍ ବନ୍ଇଅନ 'ପିଲଗ୍ରିମ୍ ପ୍ରୋଗ୍ରେସ' ନାମକ ବିଖ୍ୟାତ ପୁସ୍ତକ ରଚନା କରିଥିଲେ । ବନ୍ଦୀଘରେ ଓସ୍କାର ୱାଇଲ୍ଡ଼ ବିଖ୍ୟାତ କବି ପାଲଟି ଯାଇଥିଲେ । ଲୋକମାନ୍ୟ ତିଳକ ମହାନ ଗୀତାରହସ୍ୟ ମାଣ୍ଡାଲେ ଜେଲ୍‌ରେ ଥିବାବେଳେ ଲେଖିଥିଲେ । ଯୁଗଜ୍ୟୋତି ଜହରଲାଲ୍ ତାଙ୍କର ପ୍ରସିଦ୍ଧ ପୁସ୍ତକଗୁଡ଼ିକ ବନ୍ଦୀଘରେ ରଚନା କରିଥିଲେ । କିନ୍ତୁ ମହାନ୍ ବିପ୍ଳବୀ ଅରବିନ୍ଦ ବନ୍ଦୀଘରୁ ଉଦ୍ଭବ ହୋଇଥିଲେ ଏକ ଐଶ୍ୱରିକ ଦିବ୍ୟଶକ୍ତି ନେଇ । ସେହି ଦିନଠାରୁ ସେ ରାଜନୀତି ଛାଡ଼ି ନିଜ ଦେଶ ସେବା ସହିତ ସମଗ୍ର ମାନବସମାଜର ସେବାରେ ବ୍ରତୀହେଲେ ଏବଂ ଆଧ୍ୟାତ୍ମିକ ଚିନ୍ତାରେ ନିମଗ୍ନ ହୋଇ ପୃଥିବୀକୁ ନୂତନ ପଥ ଦେଖାଇଲେ ।

୧୯୦୮ ମସିହା ମେ ମାସ ୩ ତାରିଖ । ଶ୍ରୀ ଅରବିନ୍ଦ ତାଙ୍କର କଲିକତା ଘରେ ଅବସ୍ଥାନ କରୁଥିଲେ । ଖୁବ୍ ସକାଳୁ ପୁଲିସ ଅଫିସର ଓ ପୋଲିସ ଫଉଜ ଯାଇ ତାଙ୍କ ଘରେ ଚଢ଼ାଉ କଲେ । ସେମାନେ ଗୋଳାଗୁଳି ରିଭଲଭର ସଙ୍ଗରେ ନେଇଥିଲେ । ତାଙ୍କୁ ଓ ତାଙ୍କର କେତେକ ସହଯୋଗୀମାନଙ୍କୁ ଧରିନେଇ ଆଲିପୁର ଜେଲରେ ରଖାଗଲା । ତତ୍କାଳୀନ ବଙ୍ଗ ସରକାର ଭାରତ

ସରକାରଙ୍କୁ ପରବର୍ତ୍ତୀ ଜଣାଇଥିଲେ, "ଅରବିନ୍ଦ ସାଧାରଣ ବିପ୍ଳବୀ ନୁହଁନ୍ତି । ସେ ଗୁପ୍ତସମିତି ସହ ସମ୍ପୃକ୍ତ । ସେ ମୁଣ୍ଡ ହଲାଇଦେଲେ ଶହ ଶହ ବଙ୍ଗାଳୀ ଯୁବକ ଦେଶପାଇଁ ପ୍ରାଣ ଦେଇଦେବେ । କିନ୍ତୁ ସେ ପ୍ରତ୍ୟକ୍ଷଭାବେ କୌଣସି ଗୁପ୍ତ ଷଡ଼ଯନ୍ତ୍ର ସହିତ ସଂଯୁକ୍ତ ଥିବାର ପ୍ରମାଣ ନାହିଁ । ତଥାପି ତାଙ୍କୁ ବନ୍ଦୀକରିବାକୁ ପଡ଼ିବ । ତାଙ୍କୁ ଛାଡ଼ିଦେଲେ ଅନ୍ୟମାନଙ୍କ ନାମରେ ଥିବା ମକଦ୍ଦମା ଅକାମୀ ହୋଇଯିବ । ପୁଣି ନୂଆ ଷଡ଼ଯନ୍ତ୍ର ବାହାରି ପଡ଼ିବ । ତେଣୁ ବ୍ରିଟିଶ ସରକାରର ମଙ୍ଗଳ ପାଇଁ ଓ ଭାରତରେ ସେମାନଙ୍କର ଦୃଢ଼ଶାସନ ପାଇଁ ଅରବିନ୍ଦଙ୍କୁ ରାଜନୀତି କ୍ଷେତ୍ରରୁ ତଡ଼ି ଦେବାକୁ ପଡ଼ିବ ।"

ଅରବିନ୍ଦଙ୍କୁ ଲାଲବଜାର ହାଜତରୁ ଆଲିପୁର ଜେଲକୁ ଅଣାଗଲା । ସେଠାରେ ଗୋଟିଏ ନିର୍ଜନ କୋଠରୀରେ ତାଙ୍କୁ ରଖାଗଲା । କିନ୍ତୁ ପରେ ପରେ ଅନ୍ୟ ଅପରାଧୀମାନଙ୍କ ସହିତ ତାଙ୍କୁ ସ୍ଥାନ ଦିଆଗଲା । ଯେତେବେଳେ ଆସାମୀମାନଙ୍କ ମଧ୍ୟରୁ ନରେନ୍ଦ୍ର ଗୋସ୍ୱାମୀ ରାଜସାକ୍ଷୀ ରୂପେ ଉଭାହେଲା ଅନ୍ୟ ବିପ୍ଳବୀ ଆସାମୀଙ୍କର ଗାତ୍ର ଦାହ ହେଲା । ସେମାନେ କ୍ରୋଧରେ ଜଳିଗଲେ ଏବଂ ତାଙ୍କ ମଧ୍ୟରୁ ଦୁଇଜଣ ନରେନ୍ଦ୍ର ଗୋସ୍ୱାମୀକୁ ଗୁଳିକରି ହତ୍ୟାକଲେ । ତେଣୁ ଅରବିନ୍ଦଙ୍କୁ ପୁଣି ସ୍ୱତନ୍ତ୍ର କୋଠରୀରେ ରଖାଗଲା । ସେହି ଦିନଠାରୁ ଶ୍ରୀ ଅରବିନ୍ଦ ଏକ ନୂତନ ଐଶ୍ୱରିକ ଶକ୍ତିର ସନ୍ଧାନ ପାଇଲେ । ଗୀତା, ଉପନିଷଦ୍ ପାଠକରିବାରେ ସବୁ ସମୟ କଟାଇଲେ । ଧ୍ୟାନଯୋଗରେ ବୁଡ଼ି ରହିଲେ । କ'ଣ ଘଟିଲା ବା ନଘଟିଲା ସେଥିପାଇଁ ତାଙ୍କର ଚିନ୍ତା ନଥିଲା । ତାଙ୍କର ମକଦ୍ଦମା ବିଚାର ଚାଲିଥିଲାବେଳେ ମଧ୍ୟ ସେ ଧ୍ୟାନରେ ନିମଗ୍ନ ରହୁଥିଲେ । ଉପେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ନାମକ ତାଙ୍କର ଜଣେ ସାଥୀ ସେହି ଜେଲରେ ବନ୍ଦୀ ହୋଇଥିଲେ । ସେ ତାଙ୍କର ଆତ୍ମ ଚରିତରେ ଅରବିନ୍ଦ ଜେଲ ଜୀବନ ସମ୍ବନ୍ଧରେ ସୂଚନା ପ୍ରଦାନ କରିଅଛନ୍ତି । ସେ ଲେଖିଛନ୍ତି, "ଶ୍ରୀ ଅରବିନ୍ଦ ସର୍ବଦା ନୀରବ ରହୁଥିଲେ । ବେଶୀ-କିଛି ଗୋଳମାଳ କରୁନଥିଲେ । ଜେଲ ତରଫରୁ କୌଣସି ତେଲ ମୁଣ୍ଡରେ ଲଗାଇବା ପାଇଁ ତାଙ୍କୁ ଦିଆଯାଉନଥିଲା । କିନ୍ତୁ ଅରବିନ୍ଦଙ୍କ

ମୁଣ୍ଡର ବାଳଗୁଡ଼ିକ ଚିକ୍‌କଣ ଓ ସୁନ୍ଦର ଥିଲା । ଜଣେ ସେ ସାହସରେ ତାଙ୍କୁ ପଚାରିଲେ, "ଆପଣ କ'ଣ ଗାଧୋଇବା ବେଳେ କେଶତୈଳ ବ୍ୟବହାର କରୁଛନ୍ତି ?" ସେ ଉତ୍ତରରେ କହିଲେ, "ମୁଁ ଆଦୌ ଗାଧୋଉ ନାହିଁ ।" ସେ ପୁଣି ପଚାରିଲେ, ଆପଣଙ୍କ ବାଳ ଏତେ ଚିକ୍କଣ ଦିଶୁଛି କିପରି ?" ସେ କହିଲେ, "ସାଧନାରେ ମୁଁ ବ୍ରତୀ ଅଛି, ତେଣୁ ଏପରି ଘଟିଛି ।"

ପରେ ସେ ଦେଖିଲେ ଯେ ଅରବିନ୍ଦଙ୍କ ଆଖି ଦୁଇଟି କାଚ ଆଖିପରି ଦିଶୁଛି ଏବଂ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥିରହୋଇ ରହିଛି । ଚକ୍-ଚକ୍ ଦେଖାଯାଉଛି । ଆଖିର ପତା ପଡ଼ୁନାହିଁ କି ହଲଚଲ ହେଉନାହିଁ । ଏ କଥା ପଚାରିବାକୁ ଉପେନ୍ଦ୍ର ସାହସ କଲେ ନାହିଁ । ସଚୀନ ନାମକ ଆଉଜଣେ ବନ୍ଧୁ ତାଙ୍କୁ ପଚାରିଲେ, "ସାଧନା ଦ୍ୱାରା ଆପଣଙ୍କୁ କଣ ମିଳୁଛି ?" ସେ କହିଲେ ଯାହା ମୁଁ ଏତେଦିନ ଯାଏ ଖୋଜୁଥିଲି ତାହା ପାଇ ସାରିଲିଣି ।

ଶ୍ରୀ ଅରବିନ୍ଦ ବେଦାନ୍ତ ଯୋଗ ଶେଷ କରିଥିଲେ । ଜେଲ୍‌ରେ ତାନ୍ତ୍ରିକ ଯୋଗ ସାଧନ କରିବାକୁ ଲାଗିଲେ । ତାଙ୍କୁ ପଚାରିବାରେ ସେ କହିଲେ ଜଣେ ମହାପୁରୁଷ ତାଙ୍କ ଶରୀରରେ ପ୍ରବେଶ କରିବାର ଜଣାପଡ଼ିଲା । ତାଙ୍କ ନାମରେ ଯେଉଁ ମକଦ୍ଦମା ଦାଏର ରହିଛି ସେ ସମ୍ବନ୍ଧରେ ପଚାରିବାରେ ସେ କହିଲେ, "ଜଜ୍ ତାଙ୍କୁ ବିନା ଦଣ୍ଡରେ ଖଲାସ କରିବେ ।" ସେତେବେଳକୁ ଅରବିନ୍ଦ ଦିବ୍ୟଶକ୍ତି ପାଇବାରେ ସଫଳ ହେଲେଣି ।

ଅରବିନ୍ଦ ନିଜେ ଲେଖିଛନ୍ତି, "ସେ ଘରୁ ଲାଲବଜାର ହାଜତକୁ ଗଲାବେଳେ ତାଙ୍କ ଶରୀର ମଧ୍ୟରେ ଏକ ଦିବ୍ୟଶକ୍ତି ପ୍ରବେଶ କରୁଥିଲା । ସେ ପଚାରିଲେ "ମୋତେ କାହିଁକି ଏପରି ଦଣ୍ଡ ଦେଉଛ ?" ସେ ଶକ୍ତି ଇସାରାଦେଲା, ଏ ଦଣ୍ଡରୁ ତୁମେ ବର୍ତ୍ତିଯିବ । ଯେ ପର୍ଯ୍ୟନ୍ତ ପ୍ରକୃତ କାମ ଆରମ୍ଭ ହୋଇନାହିଁ ସେ ପର୍ଯ୍ୟନ୍ତ ତୁମର କିଛି କ୍ଷତି ହେବନାହିଁ । ମୁଁ ତମର ରକ୍ଷା କବଚ ଭାବେ ରହିବି ।"

ପୁଣି ସେ ପଗ୍ଚରଲେ, "ଏପରି ଅଭିଯୋଗ ମୋ ବିରୁଦ୍ଧରେ କାହିଁକି ? ଅନ୍ତରରୁ ବାଣୀ ଆସିଲା, "ଅପେକ୍ଷାକର, କଣ ହେଉଛି ଦେଖ ।" ତାପରେ ଅରବିନ୍ଦ ଧୀରସ୍ଥିର ଭାବରେ ଅପେକ୍ଷା କଲେ । ସେ ଲେଖିଛନ୍ତି—"ତାପରେ ମୋତେ ଆଲିପୁର ଜେଲ୍‌କୁ ନିଆଗଲା । ସେଠାରେ ମୁଁ ସେହି ମହାନ୍ ଶକ୍ତିର ଅପେକ୍ଷାରେ ରହିଲି । ଜେଲ୍‌କାମ ସରକାରର ଚାଲିଥାଏ । ମକଦ୍ଦମା ବିଚାର ଚାଲିଥାଏ । କିନ୍ତୁ ତାର ମଧ୍ୟରେ ହିନେ ଜାଣିପାରିଲି, ଏକ ଦିବ୍ୟଶକ୍ତି ମୋ ମଧ୍ୟରେ ପ୍ରବେଶ କଲା । ଯୁଆଡ଼େ ଚାହିଁଲି କେବଳ କୃଷ୍ଣ ବାସୁଦେବଙ୍କୁ ଦେଖିଲି । କୃଷ୍ଣଙ୍କ ବ୍ୟତୀତ ଅନ୍ୟକିଛି ମୋ ଦୃଷ୍ଟିରେ ପଡ଼ିଲା ନାହିଁ । ଚାରିଆଡ଼ କୃଷ୍ଣମୟ । ଏପରିକି ଶୋଇଥିବା ସମୟରେ କୃଷ୍ଣଙ୍କ ବାହୁ ମୋ ଉପରେ ଥିବାର ଅନୁଭବ କଲି । ଜେଲ୍‌ର ପ୍ରହରୀଗଣ, ଜେଲ୍‌ର ରକ୍ଷକ, ଚୋର, ଡକାୟତ ପ୍ରଭୃତି ବନ୍ଦୀଗୁଡ଼ିକ ମୋତେ ସେହି କୃଷ୍ଣ ବାସୁଦେବ ବୋଲି ଜଣାପଡ଼ିଲେ । ଗଛରେ କୃଷ୍ଣ, ବାହାରେ କୃଷ୍ଣ, ଜଗତ ହେଲା କୃଷ୍ଣମୟ ।

ଆଲିପୁର ଜେଲରୁ ସେ ଖଲାସ ହେଲେ ଠିକ୍ ବର୍ଷକ ପରେ ଅର୍ଥାତ୍ ମେ ୫ ତାରିଖ ୧୯୦୯ ମସିହା । ଆସିଲା ନୂତନ ଚେତନା । ପୃଥିବୀ ପୃଷ୍ଠରେ ଏକ ନୂତନ ଅଧ୍ୟାୟ ଉନ୍ମୋଚିତ ହେଲା । ମହାନ୍ ବିପ୍ଳବୀ ଅରବିନ୍ଦ ହେଲେ ମହାନ୍ ଯୋଗୀ ଶ୍ରୀ ଅରବିନ୍ଦ । ସମଗ୍ର ମାନବ ଜାତିର ମୁକ୍ତିପାଇଁ ଅରବିନ୍ଦ ଆଗେଇ ଆସିଲେ ।

———



## ଉତ୍ସର୍ଗର ଜୀବନଫୁଲ
## ଭଗିନୀ ନିବେଦିତା

୧୮୯୩ ମସିହାରେ ଆମେରିକାର ଶିକାଗୋ ସହରରେ ଆନ୍ତର୍ଜାତିକ ଧର୍ମ ମହାସଭା ବସିଥିଲା । ଗୈରିକବସନଧାରୀ ହିନ୍ଦୁ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦଙ୍କୁ ହିନ୍ଦୁଧର୍ମ ସମ୍ବନ୍ଧେ କିଛି କହିବା ପାଇଁ ବହୁ କଷ୍ଟରେ ୫ ମିନିଟ ମାତ୍ର ସମୟ ମିଳିଲା । ସେମାନଙ୍କର ଧାରଣା ହିନ୍ଦୁ ସନ୍ନ୍ୟାସୀଙ୍କୁ କିଏ ବା ଜାଣିଅଛି ? ତେଣୁ ତାଙ୍କ ନାମ ଡାହାଣ ପାଖେ ବିଷୟବସ୍ତୁ ସ୍ଥାନରେ ଶୂନ ଅକ୍ଷର ବୁଲାଇ ଦିଆଯାଇଥିଲା । ସେହି ଶୂନକୁ ନିରାକାର ବ୍ରହ୍ମଙ୍କ ପ୍ରତୀକବୋଲି ମନେ ପକାଇ ବିବେକାନନ୍ଦ ଭାଷଣ ଆରମ୍ଭ କଲେ । ୫ ମିନିଟ କ'ଣ ଘଣ୍ଟା ଘଣ୍ଟା ଧରି ସେ କହିବାକୁ ଲାଗିଲେ । ଜନତା ସ୍ତମ୍ଭୀଭୂତ, ପାଶ୍ଚାତ୍ୟ ଜଗତ୍ ଅବାକ୍ ! କି ଅଦ୍ଭୁତ ସନ୍ନ୍ୟାସୀ ଏ ! ଆମେରିକାର ସମସ୍ତ ସମ୍ବାଦପତ୍ର ସ୍ୱାମୀଜୀଙ୍କ ଫଟୋ ଛାପିଦେଇ ଯଶୋଗାନରେ ଶତମୁଖ ହୋଇ ଉଠିଲେ । ଜୟ ଜୟକାର ଧ୍ୱନିରେ ଆମେରିକା ଗଗନ ନିନାଦିତ ହେଲା । ବହୁ ଆମେରିକାବାସୀ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେହି ପାଞ୍ଚ ମିନିଟରୁ ଦୁଇ ବର୍ଷ କାଳ ସେଠାରେ ଅଟକି ରହିଲେ ।

କିନ୍ତୁ ପାଶ୍ଚାତ୍ୟ ଜଗତର ମୁକୁଟମଣି ଅନ୍ୟତମ ସଭ୍ୟଦେଶ ଇଂଲଣ୍ଡ ତ ରହିଗଲା, ତେଣୁ ସ୍ୱାମୀଜୀ ଇଂଲଣ୍ଡବାସୀଙ୍କୁ ନୂତନ ଦିଗ୍‌ଦର୍ଶନ ଦେବା ଲକ୍ଷ୍ୟରେ ୧୮୯୫ ମସିହାରେ ସେ ଭୂମିରେ

ପଦାର୍ପଣ କଲେ । ଏହା ଇଂଲଣ୍ଡ ପ୍ରତି ଅଯାଚିତ ବର ପ୍ରଦାନ । ସ୍ୱାମୀଜୀଙ୍କ ବାଣୀ ଇଂଲଣ୍ଡୀୟମାନଙ୍କ ଉପରେ ଗଭୀର ପ୍ରଭାବ ପକାଇଲା । ସ୍ୱାମୀଜୀଙ୍କ ବେଦ, ଉପନିଷଦ, ଗୀତା, ବେଦାନ୍ତ ଦର୍ଶନ ବ୍ୟାଖ୍ୟାରେ ଇଂଲଣ୍ଡବାସୀ ଚକିତ ହୋଇ ପଡ଼ିଲେ । ତାଙ୍କ ମୁଖନିସୃତ ବାଣୀ ଶୁଣିବାକୁ ଚାରିଆଡ଼େ ବିପୁଳ ଉତ୍ସାହ ଓ ଉନ୍ମାଦନା । ଯୁଆଡ଼େ ଗଲେ ସମ୍ବର୍ଦ୍ଧନା । ପରାଧୀନ ଭାରତରେ ପୁଣି ଏପରି ପ୍ରତିଭାଶାଳୀ ବ୍ୟକ୍ତି ଅଛନ୍ତି ? ସାରା ଇଂଲଣ୍ଡରେ ସ୍ୱାମୀଜୀଙ୍କ ହାଉଆ ଖେଳିଗଲା । ଏହିପରି ସମୟରେ ନଭେମ୍ବର ମାସର ଏକ ଶୀତ ରବିବାର ଉପରଓଳି । ଗୋଟିଏ ବୈଠକଖାନାରେ ସ୍ୱାମୀଜୀଙ୍କ ବାଣୀ ଶୁଣିବା ପାଇଁ ଶ୍ରେଷ୍ଠ ସଭାଟିଏ ବସିଥିଲା । ଗୃହଟି ଥିଲା ଧର୍ମପ୍ରାଣ ମହିଳା ଇସାବାଲ ମାର୍ଗେସନଙ୍କର । ସେ ଏହି ସଭାକୁ କୁମାରୀ ମାର୍ଗାରେଟ-ନୋବଲ୍‌ଙ୍କୁ ନିମନ୍ତ୍ରଣ କରିଥିଲେ । ମାର୍ଗାରେଟଙ୍କ ଜନ୍ମସ୍ଥାନ ଥିଲା ଆୟରଲ୍ୟାଣ୍ଡ । ତାଙ୍କ ବାପା ଗିର୍ଜାର ଜଣେ ମନ୍ତ୍ରୀ । ସେବା ଥିଲା ତାଙ୍କ ଘରର ମୌଳିକ ଧର୍ମ । ୧୦ ବର୍ଷ ବୟସରେ ବାପାଙ୍କର କାଳ ହୋଇଗଲା । ଘରେ ଥିଲେ ବିଧବା ମା ଓ ତିନିଗୋଟି କନ୍ୟା । ବଡ଼ଝିଅଟିର ନାମ ମାର୍ଗାରେଟ ନୋବଲ୍ । ପିତାଙ୍କର ପ୍ରଭାବ ମାର୍ଗାରେଟଙ୍କ ଉପରେ ଯଥେଷ୍ଟ ପଡ଼ିଥିଲା ।

ତେଣୁ ମାର୍ଗାରେଟ ମାନବଜାତିର ସେବାରେ ନିଜକୁ ନିୟୋଜିତ କରିବେ ବୋଲି ସ୍ଥିର କରିଥିଲେ । ତାଙ୍କର କଲେଜ ପଢ଼ା ସରିଲା । ତାଙ୍କୁ ୨୫ ବର୍ଷ ବୟସରେ ସେ ନିଜେ ଗୋଟିଏ ବିଦ୍ୟାଳୟ ସ୍ଥାପନ କଲେ । ସେତେବେଳେ ଇଂଲଣ୍ଡରେ ନୂତନ ଶିକ୍ଷାଦାନ ପଦ୍ଧତି ଉପରେ ଆନ୍ଦୋଳନ ଓ ଆଲୋଚନା ଚାଲିଥାଏ । ମାର୍ଗାରେଟ ସ୍ୱଭାବତଃ ଧର୍ମପରାୟଣା ଏବଂ ଖୁବ୍ ବୁଦ୍ଧିମତୀ ଥିଲେ । ଖ୍ରୀଷ୍ଟୀୟାନ ଧର୍ମ ତତ୍ତ୍ୱ ଉପରେ ସେ ବହୁ ଗବେଷଣା କଲେ । ମାତ୍ର ସେଥିରୁ ସେ ଶାନ୍ତି ବା ଆନନ୍ଦ ପାଇ ପାରିଲେ ନାହିଁ । ତେଣୁ କିଛିଦିନ ପରେ ତାଙ୍କୁ ଗୁଢ଼ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହେଲେ । ବୌଦ୍ଧଧର୍ମର ଗ୍ରନ୍ଥାଗାରୁ ବହୁ ପୁସ୍ତକ ଅଧ୍ୟୟନ କରି ଅନୁଶୀଳନ କଲେ; ମାତ୍ର 'କାନ୍ତୁ' ଓ

'କାହିଁକି' ଭାବନାରେ ତାଙ୍କର ମନ ସର୍ବଦା ବ୍ୟାକୁଳିତ ଥିଲା । ସେଥିରେ ବି ସେ ସନ୍ତୋଷ ଲାଭ କଲେନାହିଁ । ତାଙ୍କର ଭୋକିଲା ମନକୁ ଖାଦ୍ୟ ଯୋଗାଇବ କିଏ ? ସେ ଖୋଜିବାରେ ଲାଗିଲେ । ଏହିପରି ସମୟରେ ଇସାବେଲ୍‌ଙ୍କ ବୈଠକଖାନାରେ ସ୍ୱାମୀ ବିବେକାନନ୍ଦଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ବିବେକାନନ୍ଦଙ୍କୁ ଦେଖି ଦେଖି ହଜିଲାଧନ ପାଇଲା ପରି ମନେ ହେଲା । ବିବେକାନନ୍ଦ ଭାଷଣ ଦେବାରେ ଲାଗିଲେ । ଅନର୍ଗଳ ବକ୍ତା, କେବଳ ଖାଲି ଅମୃତଗୁଡ଼ିଏ ବର୍ଷା ହୋଇଗଲା । ମାର୍ଗାରେଟ୍ ଏକ ଲୟରେ, ଅପଲକ ନୟନରେ ଭାଷଣ ଶୁଣିଲେ । ସେ ସ୍ଥାନ ଛାଡ଼ି ଚାଲିଯିବା ପାଇଁ ତାଙ୍କର ଇଚ୍ଛାହେଲା ନାହିଁ । ହିନ୍ଦୁ ସନ୍ନ୍ୟାସୀଙ୍କ ମନ୍ତ୍ରମୁଗ୍ଧକାରୀ ମୁଖ ନିଃସୃତବାଣୀ ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଲା । ଗୀତା, ଉପନିଷଦ ସମ୍ବନ୍ଧୀୟ ଆଲୋଚନାମାନ ତାଙ୍କୁ ବିଶେଷଭାବରେ ଆକର୍ଷଣ କଲା । ସ୍ୱାମୀଜୀଙ୍କର ଶକ୍ତିକର୍ଷକ ବ୍ୟକ୍ତିତ୍ୱ ପ୍ରତି ମାର୍ଗାରେଟ୍ ଆନୁଗତ୍ୟ ସ୍ୱୀକାର କଲେ । ତାଙ୍କ ଧର୍ମ ଆଲୋଚନାରେ ସେ ଏକ ନୂତନତାର ସନ୍ଧାନ ପାଇଲେ । ଅଦୃଷ୍ଟ-ଶକ୍ତି ଭଗବାନଙ୍କର ପ୍ରେରଣା ତାଙ୍କର ନିକଟତର ହେଲାପରି ଜଣାପଡ଼ିଲା । ସ୍ୱାମୀଜୀଙ୍କ ଭାଷଣରେ ସେ ଏତେଦୂର ମଜ୍ଜିଗଲେ ଯେ ଜାଣିନେଲେ ଯେ ଯାହା ଖୋଜୁଥିଲେ ତାହା ପାଇଗଲେ । ସେହିଠାରେ ସେ ସ୍ଥିର ନିଷ୍ପତ୍ତି ନେଲେ, ସ୍ୱାମୀଜୀଙ୍କୁ ଗୁରୁ କରିବେ । ତେଣୁ ସ୍ୱାମୀଜୀ ଆମେରିକାକୁ ପୁନଃ ପ୍ରସ୍ଥାନ କରିବା ପୂର୍ବରୁ ମାର୍ଗାରେଟ୍ ତାଙ୍କୁ 'ଗୁରୁ' ବୋଲି ସମ୍ବୋଧନ କଲେ ।

ସେହିଦିନଠାରୁ ତାଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆସିଲା । ଧର୍ମଯାଜକ ଘରର ଝିଅ ସେ । ତାଙ୍କ ହୃଦୟରେ ଦଳିତ, ପତିତମାନଙ୍କ ପ୍ରତି ଦରଦ ଥିଲା ସୁପ୍ତ ଅବସ୍ଥାରେ । ବର୍ତ୍ତମାନ ବିବେକାନନ୍ଦଙ୍କ କାଉଁରିହାଡ଼ ସ୍ପର୍ଶରେ ତାହା ପଲ୍ଲବିତ ହେଲା । ସେ ଉପଯୁକ୍ତ ଗୁରୁ ପାଇଲେ ଓ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଏହି ସମୟରେ ସ୍ୱାମୀଜୀ ପାଶ୍ଚାତ୍ୟଦେଶ ଗସ୍ତସାରି ଭାରତକୁ ଫେରିଆସିଲେ । ମାର୍ଗାରେଟ୍ ଭାରତବର୍ଷରେ ଦଳିତ, ପତିତମାନଙ୍କ

ପାଇଁ କାର୍ଯ୍ୟ କରିବାକୁ ମନବଳାଇ ସ୍ୱାମୀଜୀଙ୍କ ପାଖକୁ ପତ୍ର ଲେଖିଲେ । ସ୍ୱାମୀଜୀ ଉତ୍ତରରେ ଲେଖିଲେ, "ଭାରତ ଗୋଟିଏ ଦେଶ ଯେଉଁଠାରେ ଅଜ୍ଞାନତା ଅନ୍ଧବିଶ୍ୱାସ ପୂରି ରହିଛି । ଭାରତୀୟମାନଙ୍କର ଦୁଃଖ ଦୁର୍ଦ୍ଦଶା ଅନେକ । ଏଠାରେ ଜାତିପ୍ରଥା ଅତି କଠୋର । ଏମାନେ ଅର୍ଦ୍ଧଭୁକ୍ତ, ଅର୍ଦ୍ଧ ପରିହିତ । ତୁମେ ଭାରତଭଳି ଗରମ ଦେଶରେ କାମକରି ପାରିବଟି ? ପୁଣି ତୁମ ଦେଶରେ ତୁମକୁ ଘୃଣାକରିବେ ଓ ପାଗଳ ବୋଲି କହିବେ । ଏଥିରେ ତୁମେ ଯଦି କାମ କରିବାକୁ ଆଗଭର ହୁଅ ତେବେ ଆସ । ମୁଁ ତୁମକୁ ବଞ୍ଚିବାଯାଏ ସାହାଯ୍ୟ କରିବି ।" ମାର୍ଗାରେଟ ମନସ୍ଥ କରିଥିଲେ ଭାରତର ମଙ୍ଗଳପାଇଁ, ସୁଖ ପାଇଁ କାମ କରିବେ । ତେଣୁ ସେ ନିଜ ପଣରୁ ଓହରିଲେ ନାହିଁ । ୧୮୯୭ ମସିହା ଶେଷ-ଭାଗରେ ଇଂଲଣ୍ଡ ଛାଡ଼ି ୧୮୯୮ ମସିହା ଜାନୁଆରି ମାସରେ ଭାରତ ଭୂମିରେ ପଦାର୍ପଣ କଲେ । ପ୍ରଥମେ କଲିକତାର ବେଲୁଡ଼ଠାରେ ଗୋଟିଏ କୁଟୀରରେ ସେ ବାସ କରିବାକୁ ଲାଗିଲେ । ବିବେକାନନ୍ଦ ମାର୍ଚ୍ଚ ୨୫ ତାରିଖରେ ତାଙ୍କର ନୂତନ ନାମ ଦେଲେ ଭଗିନୀ ନିବେଦିତା ଏବଂ ବ୍ରହ୍ମଚାରିଣୀ ମନ୍ତ୍ରରେ ଦୀକ୍ଷିତ କରାଇଲେ । କଲିକତାର ବାଗ୍ ବଜାରରେ ସେ ରାମକୃଷ୍ଣ ପରମହଂସଙ୍କ ପତ୍ନୀ ମା ଶାରଦା ଦେବୀଙ୍କ ସାନ୍ନିଧ ଲାଭକଲେ ଏବଂ ତାଙ୍କର ନିଷ୍ଠା ଓ ସାଧନାରେ ମୋହିତ ହୋଇଗଲେ । ସେଠାରେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ କରି ପଢ଼ାଶୁଣା କରାଇଲେ । ବିଦ୍ୟାଳୟ ଚଳାଇବା ସେ ସମୟରେ ଅତୀବ କଷ୍ଟକର ବ୍ୟାପାର ଥିଲା । ତେଣୁ ନିବେଦିତା ପାଣ୍ଠି ସଂଗ୍ରହ କରିବା ପାଇଁ ସ୍ୱାମୀଜୀଙ୍କ ସହ ପୁଣି ଥରେ ବିଦେଶ ଭ୍ରମଣରେ ବାହାରିଲେ ।

୧୯୦୨ ମସିହାରେ ସେ ବିଦେଶରୁ ଫେରିଲେ ଏବଂ ଭାରତୀୟ-ମାନଙ୍କ ସେବାରେ ନିଜକୁ ନିୟୋଜିତ କଲେ । ଭାରତୀୟ ଜାତି ସାଧାରଣତଃ ରକ୍ଷଣଶୀଳ ଥିଲା । ସେମାନଙ୍କ ଚିନ୍ତାଧାରାକୁ ପରିବର୍ତ୍ତନ କରିବାପାଇଁ ସେ ସଭା ସମିତିମାନଙ୍କରେ ଭାଷଣ ଦେବାକୁ ଆରମ୍ଭ କରିଦେଲେ । ମାତୃଜାତିକୁ ଉଠାଇବା ପାଇଁ ଆପ୍ରାଣ ଚେଷ୍ଟାକଲେ ।

ମାତୃଜାତିର ଉନ୍ନତିକଳ୍ପେ ଲେଖାମାନ ପ୍ରକାଶ କଲେ । ଭାରତର ସମ୍ବାଦପତ୍ରଗୁଡ଼ିକ ତାଙ୍କୁ ଜଣେ ସ୍ୱର୍ଗଦେବୀ ବୋଲି ବର୍ଣ୍ଣନା କଲେ ଓ ତାଙ୍କ ନିଃସ୍ୱାର୍ଥପର କାର୍ଯ୍ୟରେ ଭୂରି ଭୂରି ପ୍ରଶଂସା କଲେ ।

ବ୍ରିଟିଶ ସରକାର ତାଙ୍କ ଗତିବିଧିକୁ ଲକ୍ଷ୍ୟ କରୁଥିଲେ । ତାଙ୍କ ପଛେ ପଛେ ଗୋଇନ୍ଦା ଲଗାଇଲେ । ତାଙ୍କର ସମସ୍ତ ଚିଠିପତ୍ରକୁ ଯାଞ୍ଚ କରାଇଲେ । ନିବେଦିତା ଏଥିରେ ଦବିଗଲେ ନାହିଁ । ସେ ନିଜ ସ୍ୱାସ୍ଥ୍ୟପ୍ରତି ଯତ୍ନ ନ ନେଇ ଭାରତୀୟ ମାତୃଜାତି ପ୍ରତି କର୍ତ୍ତବ୍ୟ ପାଳନ କଲେ । ଏହିପରି ସମୟରେ ଏକ ଦାରୁଣ ଧକ୍କା ଆସି ପହଞ୍ଚିଲା । ୧୯୦୪ ଜୁଲାଇ ୪ ତାରିଖରେ ସ୍ୱାମୀଜୀ ଏ ମରସଂସାରରୁ ୩୯ ବର୍ଷ ବୟସରେ ବିଦାୟ ନେଇ ଗଲେ । ମାତ୍ର ନିବେଦିତା ନିଜ କାର୍ଯ୍ୟରୁ ବିରତ ହେଲେ ନାହିଁ । ସେ ଭାଷଣମାନଙ୍କରେ କହି ବୁଲିଲେ, "ସ୍ୱାମୀଜୀ ଆମ୍ଭମାନଙ୍କ ମଧ୍ୟରେ ଅଛନ୍ତି, ତାଙ୍କର ପ୍ରଦର୍ଶିତ ପନ୍ଥାରେ କାର୍ଯ୍ୟ କରିଯିବାକୁ ପଡ଼ିବ । ତେଣୁ ନୂତନ ବଳ, ନୂତନ ଶକ୍ତି ସଂଗ୍ରହ କରି କାର୍ଯ୍ୟ କରିଯାଅ ।"

ସେହି ଦିନଠାରୁ ଦେଶକୁ କିପରି ଗଢ଼ି ତୋଳିବାକୁ ହେବ, ଲୋକମାନଙ୍କର ହୀନମନ୍ୟତା କିପରି ଦୂର ହେବ, ଭାରତ କିପରି ପରାଧୀନତା ଶୃଙ୍ଖଳରୁ ମୁକ୍ତହେବ, ଭାରତରେ ଜାତୀୟ ଭାବ କିପରି ଜାଗ୍ରତ ହେବ—ଏହିସବୁ ବିଷୟରେ ସେ ବଳିଷ୍ଠ ଲେଖାମାନ ପ୍ରକାଶ କଲେ । ଭାରତ ଜନଜୀବନର ସମୃଦ୍ଧି ପାଇଁ, ଭାରତର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ ସେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ କଲିକତାରେ ଏକ ବିଦ୍ୟାଳୟ ପ୍ରତିଷ୍ଠା କରି ପିଲା ଓ ପ୍ରୌଢ଼ମାନଙ୍କୁ ଶିକ୍ଷା ଦେବାରେ ଲାଗିଲେ । ସେମାନେ କିପରି ନିର୍ଭୀକ ହେବେ ସେଥିପାଇଁ ଗଭୀର ଚେଷ୍ଟାକଲେ । ଭାରତର ବମ୍ବେ, ଆହମେଦାବାଦ, ବରୋଦା, ଓ୍ୱାର୍ଦ୍ଧା, ଲକ୍ଷ୍ନୌ, ପାଟନା ପ୍ରଭୃତି ସହରମାନଙ୍କରେ ସଭା ସମିତିମାନ କରି ଜାତୀୟ ପ୍ରେମରେ ଲୋକମାନଙ୍କୁ ଉଦ୍‌ବୁଦ୍ଧ କଲେ । ରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ପ୍ରଦର୍ଶିତ ମାର୍ଗରେ ସମସ୍ତେ ପରିଚାଳିତ ହୋଇ

ଭାରତର ପୁନଃ ଜାଗରଣ ପାଇଁ ପ୍ରଗାଢ଼ ଚେଷ୍ଟା କରିବାକୁ ଦେଶବାସୀଙ୍କୁ ପ୍ରବର୍ତ୍ତାଇଲେ ।

ଏହିପରି ସମୟରେ ୧୯୦୫ ମସିହାରେ ବଙ୍ଗଭଙ୍ଗ ଆନ୍ଦୋଳନ ଆରମ୍ଭ ହୋଇଗଲା । ସମସ୍ତ ବଙ୍ଗଭୂମି ପଡ଼ିଲା ଉଠିଲା । ଜାତୀୟ ଚେତନାର ସଙ୍କେତ ମିଳିଲା । ନିବେଦିତା ଏଥିରେ ଗଭୀର ସନ୍ତୋଷ ପ୍ରକାଶ କଲେ ଓ ନବଭାରତର ସ୍ୱପ୍ନ ଦେଖିଲେ । ସେ ଯେ ଜଣେ ଜାତୀୟତାବାଦୀ ଥିଲେ ଏଥିରୁ ସ୍ପଷ୍ଟ ଜଣାପଡ଼ିଲା । ତାଙ୍କର ବକ୍ତୃତାରେ ସ୍ୱଦେଶପ୍ରେମ ସ୍ଲୋଗାନ ପ୍ରସ୍ଫୁରିତ ହେବାକୁ ଲାଗିଲା । ତାଙ୍କର ଲେଖା ଓ ବକ୍ତୃତାରେ ରମେଶଚନ୍ଦ୍ର ଦତ୍ତ, ଗୋପାଳକୃଷ୍ଣ ଗୋଖଲେ, ବିପିନଚନ୍ଦ୍ର ପାଲ, ଅରବିନ୍ଦ ଘୋଷ, ମଦନମୋହନ ମାଲବ୍ୟ, ରବୀନ୍ଦ୍ରନାଥ ଠାକୁର ପ୍ରଭୃତି ଜାତୀୟତାବାଦୀ ନେତାମାନେ ଉତ୍ସାହିତ ଓ ଉଲ୍ଲସିତ ହେଲେ । ଭଗିନୀ ନିବେଦିତାଙ୍କ ମଧ୍ୟରେ ସେମାନେ ନୂତନ ଭାରତର ସନ୍ଧାନ ପାଇଲେ । ନୂତନ ଦିଗ୍‌ବଳୟର ଆଭାସ ମିଳିଲା । କର୍ଜନଙ୍କ ବଙ୍ଗଭଙ୍ଗ ଆନ୍ଦୋଳନ ଏହାକୁ ଦବାଇ ପାରିଲା ନାହିଁ । ଜଣେ ବିଦେଶିନୀ ମହିଳା ଭାରତକୁ ନିଜର ଜନ୍ମ ସ୍ଥାନ ମନେକରି ନିଜର ଅମୂଲ୍ୟ ଜୀବନ ଭାରତ ଦେଶପାଇଁ ଓ ଜାତିପାଇଁ ଦାନ କରିଗଲେ । ସେ ଭାରତର ନଦ, ନଦୀ, ବଣ, ପାହାଡ଼, ପର୍ବତ, କନ୍ଦର, ପଶୁପକ୍ଷୀ ସମସ୍ତଙ୍କୁ ନିଜର ବୋଲି ମନେକଲେ । ଭାରତର ଧର୍ମଶାସ୍ତ୍ର ବେଦ, ଉପନିଷଦ, ଗୀତା ପ୍ରଭୃତି ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ପ୍ରେମ ଥିଲା । ସେ ଭାରତବାସୀଙ୍କ ହୃଦୟକୁ ଜୟ କରିଥିଲେ । ତାଙ୍କର ନିଃସ୍ୱାର୍ଥପର ଦେଶସେବାର ପଟାନ୍ତର ନଥିଲା । ଭାରତର ଜାତୀୟ ଜୀବନକୁ ପ୍ରାଣବନ୍ତ ଓ ଋଦ୍ଧିମନ୍ତ କରିବାରେ ସେ କୁଶଳୀ କାରିଗର ଥିଲେ । ସ୍ୱାମୀଜୀଙ୍କର ବିରାଟ ବ୍ୟକ୍ତିତ୍ୱ ଓ ଅଲୌକିକ ପ୍ରତିଭା ତାଙ୍କର ପଥ ପ୍ରଦର୍ଶକ ଥିଲା । ସମସ୍ତ ଭାରତବର୍ଷ ତାଙ୍କର ଜୟଗାନ କରିବାରେ ମୁଖରିତ ହୋଇ ଉଠିଲା । ଏତିକବେଳେ ବଧି ତାଙ୍କୁ ସହିପାରିଲା ନାହିଁ । ସୁପ୍ତ, ଦଳିତ, ଅନଗ୍ରସର ଭାରତ ଭୂମିପାଇଁ ସେ ଅନବରତ ଯେଉଁ କଠୋର ପରିଶ୍ରମ କଲେ ତାରି ଫଳରେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ୧୯୧୧

ମସିହାରେ ମାତ୍ର ୪୪ ବର୍ଷ ବୟସରେ ସେ ଏ ମର ସଂସାରରୁ ବିଦାୟ ନେଲେ । ଏହି ମହୀୟସୀ ମହିଳାଙ୍କ ମୃତ୍ୟୁରେ ଦେଶର ଗୃହଆଡ଼େ ଶୋକର ଛାୟା ଖେଳଯାଇଥିଲ । ମହାମନା ଗୋଖଲେ ତାଙ୍କ ମୃତ୍ୟୁରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ, "ସେହି ଆଶ୍ଚର୍ଯ୍ୟଜନକ ଚିତ୍ତାକର୍ଷକ ବ୍ୟକ୍ତିତ୍ୱ ଭାରତ ଜନମାନସର ହୃଦୟତନ୍ତ୍ରୀକୁ ସ୍ପର୍ଶ କରି ପାରିଥିଲେ ଏବଂ ସେ ତାଙ୍କର ସର୍ବସ୍ୱ ଭାରତପାଇଁ ଉତ୍ସର୍ଗ କରିଥିଲେ । ତାଙ୍କପରି ରମଣୀ ଯେକୌଣସି ଦେଶର ଗର୍ବ ।" ବାସ୍ତବିକ ଭଗିନୀ ନିବେଦିତାଙ୍କ ପରି ଜଣେ ଅସାମାନ୍ୟା ବିଦେଶିନୀ ମହିଳା ଭାରତ-ବାସୀଙ୍କ ପାଇଁ ସର୍ବସ୍ୱ ଦାନକରି ଆଜି ଅମର । ସେ ଭାରତର ହୃଦୟ-ତନ୍ତ୍ରୀରେ ଚିରକାଳ ବାଜି ଉଠିବେ ।

ଧନ୍ୟ ନିବେଦିତା ଧନ୍ୟ ତୁମ୍ଭର ନିଃସ୍ୱାର୍ଥପର ଦେଶସେବା ।

---



## ନ୍ୟାୟର ନିକଟତରେ ନିଜେ—
## ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି
## ଡକ୍ଟର ରାଜେନ୍ଦ୍ର ପ୍ରସାଦ

ମଣିଷର ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଶାରୀରିକ ଅବସନ୍ନତା ଆସେ । ଶିଥିଳତା ମଧ୍ୟ ଆସେ । ସେ ସହଜ ଓ ସୁଖମୟ ଜୀବନ ଚାହେଁ । କିନ୍ତୁ ରାଜେନ୍ଦ୍ର ପ୍ରସାଦ ଥିଲେ ସ୍ୱାଧୀନତା ସଂଗ୍ରାମର ଜଣେ ବିଶିଷ୍ଟ କର୍ଣ୍ଣଧାର । ଜୀବନର ଶେଷସମୟ ପର୍ଯ୍ୟନ୍ତ ସେ ଥିଲେ ନିରଲସ ଓ କର୍ମତତ୍ପର । ଭାରତର ସର୍ବୋଚ୍ଚ ଆସନ ଅଧିକାର କରିବା ପାଇଁ ସେ ଥିଲେ ଜଣେ ଦକ୍ଷ ଓ ଉପଯୁକ୍ତ ବ୍ୟକ୍ତି । ରାଜେନ୍ଦ୍ର ପ୍ରସାଦ ନିଜର ସରଳ ଓ ଉଦାର ସ୍ୱଭାବ ହେତୁ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ତେଣୁ ନୂତନ ସମ୍ବିଧାନ ଅନୁଯାୟୀ ସେ ରାଷ୍ଟ୍ରପତି ଆସନ ଅଳଙ୍କୃତ କରିଥିଲେ । ଦେଶ ବିଦେଶରେ ତାଙ୍କର ବନ୍ଧୁ ବାନ୍ଧବ ଥିଲେ ।

ଥରେ ଜଣେ ବନ୍ଧୁ ତାଙ୍କୁ ହାଣ୍ଡିଦାନ୍ତର ଗୋଟିଏ ଫାଉଣ୍ଟେନ ପେନ୍ ଉପହାର ଦେଇଥିଲେ । ବନ୍ଧୁତାର ଚିହ୍ନସ୍ୱରୂପ କଲମଟିକୁ ସେ ଅତି ଆଦରରେ ରଖିଲେ । କଲମଟିର ମୁନ ମୁଣ୍ଡା ହୋଇଯିବ ବା ବହୁଥର ବ୍ୟବହାର କଲେ କଲମଟିର ସୌନ୍ଦର୍ଯ୍ୟ ହାନି ହୋଇଯିବ —ଏହି ଭୟରେ ସେ କଲମଟିକୁ କମ୍ ବ୍ୟବହାର କରୁଥିଲେ । କେବଳ ସମୟେ ସମୟେ ତାଙ୍କୁ କେତୋଟି ଦସ୍ତଖତ କରିବାକୁ ପଡୁଥିଲା ବେଳେ ସେ ତାହାକୁ ବ୍ୟବହାର କରୁଥିଲେ । କଲମଟିକୁ ସେ ଏତେ ଭଲ ପାଉଥିଲେ ଯେ ସବୁବେଳେ ସେ ତାହାକୁ ନିଜ ଆଗରେ ଟେବୁଲ୍ ଉପରେ ରଖୁଥିଲେ ଏବଂ ନିଜ ଆସନରେ ବସିବା-ବେଳେ କଲମ ପ୍ରତି ବହୁବାର ଦୃଷ୍ଟି ନିକ୍ଷେପ କରୁଥିଲେ । ଆମେ ଆମ ଟେବୁଲ୍‌ରେ ମଧ୍ୟ ମଇଳା ଲାଗାଇ ଦେଉ ନଥାଉ । ବରଂ ଭାରତବର୍ଷର ରାଷ୍ଟ୍ରପତିଙ୍କ ଟେବୁଲ୍ କିପରି ଭାବରେ ସଜା ହେଉଥିବ ଅନୁମାନ କରାଯାଇପାରେ । ବୈଠକଖାନାର ଚାକର ଅତି ଯତ୍ନର ସହିତ କଲମଟିର ତତ୍ତ୍ୱ ନେଉଥିଲା । ସେତେବେଳେ ବୈଠକଖାନା ଦାୟିତ୍ୱରେ ଥିବା ଚାକରଟିର ନାମ ଥିଲା ତୁଳସୀ । ତୁଳସୀ ଅତି କର୍ତ୍ତବ୍ୟପରାୟଣ । ପୁଣି ଖୋଦ୍ ରାଷ୍ଟ୍ରପତିଙ୍କ ବୈଠକଖାନାର ଚାକର । ତେଣୁ ତାର ବନ୍ଧୁମାନଙ୍କ ମଧ୍ୟରେ ଖାତିର ବେଶି । ସେ ମଧ୍ୟ ସନ୍ତୋଷ ଓ କର୍ମନିଷ୍ଠ ଥିବାରୁ ରାଷ୍ଟ୍ରପତିଙ୍କ କୃପାଲାଭ କରିଥିଲା । ତୁଳସୀ ପ୍ରତିଦିନ ବୈଠକଖାନା ପରିଷ୍କାର କରେ ଓ ଟେବୁଲ୍‌ଟିକୁ ଉତ୍ତମରୂପେ ସଜାଇରଖେ । ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଓ ବନ୍ଧୁ-ବାନ୍ଧବଙ୍କର ସମାଗମ ହୁଏ । ତୁଳସୀ ସମସ୍ତଙ୍କର ପରିଚିତ ଓ ପ୍ରିୟ ମଧ୍ୟ । ମହା ଆନନ୍ଦରେ ତୁଳସୀର ଦିନଗୁଡ଼ିକ କଟିଯାଉଥିଲା । ରାଷ୍ଟ୍ରପତିଙ୍କର ଚାକର ହୋଇଥିବାରୁ କୌଣସି ସହୃଦୟ ବ୍ୟକ୍ତି ତାକୁ ବକ୍‌ସିସ ପ୍ରଦାନ କରୁଥିଲେ । ମାତ୍ର ମଣିଷର ସବୁଦିନ ସମାନ ଯାଏ ନାହିଁ । ଦିନେ ଟେବୁଲ୍ ଉପର ସଫା କରୁ କରୁ ତୁଳସୀ ହାତରୁ ହାଣ୍ଡିଦାନ୍ତ କଲମଟି ଖସିପଡ଼ିଲା । କଲମଟି ତ ଦୁଇଖଣ୍ଡ ହୋଇଗଲା, ମୂଲ୍ୟବାନ ଗାଲିଚା ଉପରେ କାଳିଗୁଡ଼ାକ ଛିଞ୍ଚାଡ଼ି ହୋଇପଡ଼ିଲା । କଲମ ଭାଙ୍ଗିଗଲା ଓ ମୂଲ୍ୟବାନ୍ ଗାଲିଚାଟି ଅତି ଅସୁନ୍ଦର ଦେଖାଗଲା ।

ଏପରି ଅପ୍ରତ୍ୟାଶିତ ଘଟଣାରେ ତୁଳସୀ କ'ଣ କରିବ ଜାଣିପାରିଲା ନାହିଁ । ସେ ବରଡ଼ା ପତ୍ରପରି ଥରିବାକୁ ଲାଗିଲା । କରିବ କ'ଣ ? କେତେ ବଡ଼ ଭୁଲ ସେ କରିପକାଇଛି । କଥାଟା ଅଛପା ହୋଇ ରହିଲା ନାହିଁ । ରାଜେନ୍ଦ୍ର ପ୍ରସାଦଙ୍କ କାନକୁ ଗଲା । ଯେତେବେଳେ ସେ ସଠିକ ଭାବରେ ଜାଣିପାରିଲେ ଯେ ତୁଳସୀ କଲମଟି ଭାଙ୍ଗିଦେଇଛି, ସେ ଦୁଃଖ ଓ ରାଗରେ ମ୍ରିୟମାଣ ହୋଇପଡ଼ିଲେ । ରାଗ ତ ବ୍ରହ୍ମଚଣ୍ଡାଳ । ପରମୁହୂର୍ତ୍ତରେ ସେ ଏତେ ରାଗିଗଲେ ଯେ ସଙ୍ଗେ ସଙ୍ଗେ ତୁଳସୀକୁ ରାଷ୍ଟ୍ରପତି ଭବନର ଅନ୍ୟ ବିଭାଗକୁ ବଦଳି କରିଦେଲେ ଏବଂ ତାକୁ ଚାକିରିରୁ ବରଖାସ୍ତ କରିଦେବେ ବୋଲି ଧମକ ଦେଲେ । ତୁଳସୀ ହତବାକ୍, ମୂକପରି ଠିଆ ହୋଇଥାଏ । ତା'ର ଦୁଇଚକ୍ଷୁରୁ ଲୋତକର ଧାର ଗଡ଼ିପଡ଼ୁଥାଏ । ଲୋତକପୂର୍ଣ୍ଣ ଚକ୍ଷୁରେ ସେ ରାଷ୍ଟ୍ରପତିଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ନୂଆ ଚାକିରିରେ ଯୋଗ ଦେବାକୁ ଚାଲିଗଲା ।

ରାଜେନ୍ଦ୍ର ପ୍ରସାଦ ଅତି ଦୟାଳୁ ପ୍ରକୃତିର ଲୋକ ଥିଲେ । ତୁଳସୀ ସେ ସ୍ଥାନ ତ୍ୟାଗ କରିବାପରେ ତାଙ୍କ ମନରେ ଭାବାନ୍ତର ଜାତ ହେଲା । ସେ ସିନା ରାଗରେ ତୁଳସୀର ବଦଳି କରିଦେଲେ; ମାତ୍ର ଦୁଃଖରେ ସେ ଅଧୀର ହୋଇପଡ଼ିଲେ । ମନେ ମନେ ଭାବିଲେ, "ମୁଁ ତୁଳସୀ ପ୍ରତି ନିଷ୍ଠୁର ବ୍ୟବହାର କରିଛି । ତାକୁ ଏଠାରୁ ଅନ୍ୟତ୍ର ପଠାଇଦେବା ମଧ୍ୟ ମୋର ଗୁରୁତର ଅପରାଧ ହୋଇଛି ।" ସାରାଦିନଟିଯାକ ସେ ଏହା ଭାବିବାକୁ ଲାଗିଲେ । ସେ ଦିନଟି ତାଙ୍କର ସୁଖରେ କଟିଲା-ନାହିଁ । ମନେ ମନେ ଚିନ୍ତାକଲେ, "ଯଦି ଅସତର୍କତାବଶତଃ ଜଣେ ଲୋକ ହାତରୁ ଜିନିଷଟିଏ ପଡ଼ି ଭାଙ୍ଗିଯାଏ ତେବେ ସେ ମଣିଷର ଦୋଷ କ'ଣ ? ଫାଉଣ୍ଟେନ୍ ପେନ୍‌ଟି ଭାଙ୍ଗିଗଲା, ଏଥିରେ ତୁଳସୀର ଦୋଷ କେତେ ? ମୁଁ ତାକୁ କେତେବଡ଼ ଦଣ୍ଡ ଦେଇଛି ?" ଏହି କଥା ଭାବି ଭାବି ସେ ଖାଦ୍ୟପେୟ ମଧ୍ୟ ଭୁଲିଗଲେ । ଶେଷରେ ସ୍ଥିର କଲେ ତୁଳସୀକୁ କ୍ଷମା ମାଗିବାକୁ ହେବ । ତା' ନହେଲେ ତାଙ୍କ ମନ ସ୍ଥିର ହୋଇ ରହିବ ନାହିଁ । ଏହି ବିଷୟଟି ଘର ଓ ବାହାରର କେତେ ବନ୍ଧୁଙ୍କ ଆଗରେ ପ୍ରକାଶ କଲେ । ସେମାନେ ପ୍ରତ୍ୟେକେ ଜଣେ ଚାକର । ଦେଶର

ପ୍ରଥମ ନାଗରିକ କ୍ଷମା ମାଗିବାଟାକୁ ପସନ୍ଦ କଲେ ନାହିଁ । ମାତ୍ର ଉଦାର ଓ ସରଳ ରାଷ୍ଟ୍ରପତି ଏଥିରେ ଦବିଗଲେ ନାହିଁ । ସେ ନିଜ ନିଷ୍ପତ୍ତିରେ ଅଟଳ ରହିଲେ । ସାରା ରାତି ତାଙ୍କର ଅନିଦ୍ରାରେ କଟିଲା । ତହିଁ ଆରଦିନ ରାତି ନପାହୁଣୁ ସେ ତୁଳସୀକୁ ଡକାଇ ପଠାଇଲେ । ସେ ନ ଆସିବା ପର୍ଯ୍ୟନ୍ତ ସେ ନିଜର ସକାଳ ଜଳଖିଆ ସୁଦ୍ଧା ଖାଇଲେ ନାହିଁ । ଏଣେ ତୁଳସୀ ମହାଚିନ୍ତାରେ ପଡ଼ିଲା । କାହିଁକି ପୁଣି ତାକୁ ଡାକୁଛନ୍ତି ? ତୁଳସୀ ବିବ୍ରତ ହେବାପରି ଜଣାପଡ଼ିଲା, ମାତ୍ର ନଆସିବାକୁ ତା'ର ଗତି ନଥିଲା । ସେ ଧୀରେ ବୈଠକଖାନାକୁ ଉଣ୍ଡିଲା । ଦେଖିପାରିଲା ଦେଶର ପ୍ରଥମ ନାଗରିକ ବଡ଼ ଚିନ୍ତିତ । ତାଙ୍କର ମୁଖମଣ୍ଡଳରେ ଦୁଃଖର ଛାୟା ଖେଳିଯାଇଛି । ତୁଳସୀ ଅତି ସତର୍କତାର ସହ ଗୃହ ମଧ୍ୟରେ ପ୍ରବେଶକରି ସାଷ୍ଟାଙ୍ଗ ପ୍ରଣାମ କଲା ଏବଂ ଆଦେଶ ଅପେକ୍ଷାରେ ରହିଲା । ରାଜେନ୍ଦ୍ର ପ୍ରସାଦ ହଠାତ୍ ନିଜ ଆସନରୁ ଉଠିପଡ଼ି ତୁଳସୀ ପାଖକୁ ଧାଇଁ ଆସି ଛଳ ଛଳ ଆଖିରେ ହାତଯୋଡ଼ି କହିଲେ, "ତୁଳସୀ ତୁମପ୍ରତି ମୁଁ ବଡ଼ କଠୋର ହୋଇପଡ଼ିଛି । ତୁମ ପ୍ରତି ଅନ୍ୟାୟ କରିଛି । ଦୟାକରି ମୋତେ କ୍ଷମାଦିଅ ।" ଏ କଥା ଶୁଣି ତୁଳସୀ ଅବାକ୍ । ତା' ପାଟିରୁ କଥା ବାହାରିଲା ନାହିଁ । ତା'ର ଆଖି ଛଳଛଳ ହୋଇଗଲା । ଏତେବଡ଼ ବିରାଟ ଦେଶର ରାଷ୍ଟ୍ରପତି, କେଡ଼େବଡ଼ ଲୋକ ସେ, ତାଙ୍କ ମୁହଁରୁ ଏପରି କଥା-ଶୁଣି ସେ କ'ଣ କରିବ ସ୍ଥିର କରିପାରିଲା ନାହିଁ ! ତା' ଆଖିରୁ ଲୁହ ଗଡ଼-ବାରେ ଲାଗିଲା । ସେ ନିର୍ବାକ୍ ଓ ନିଷ୍ପନ୍ଦହୋଇ ଠିଆହୋଇ ରହିଲା । କିନ୍ତୁ ରାଜେନ୍ଦ୍ର ପ୍ରସାଦ କ'ଣ ଛାଡ଼ିବାର ଲୋକ ? ସେ ପୁଣି କହିଲେ, "ତୁଳସୀ, ତୁମେ କ'ଣ ମୋତେ କ୍ଷମା ଦେବନାହିଁ ? ଯଦି କ୍ଷମା ନଦେବ ତେବେ ମୋର ଅବଶିଷ୍ଟ ସମୟତକ ଅଶାନ୍ତିରେ କଟିବ । କୌଣସି କାମରେ ମୋର ମନ ଲାଗିବ ନାହିଁ । ମୋ ଜୀବନଟା ବିଷମୟ ହୋଇଯିବ ।" ଏକଥାରେ ତୁଳସୀ ଆଉ ସମ୍ଭାଳି ପାରିଲା ନାହିଁ । ତା'ର ଯେ ପ୍ରଭୁ ସମଗ୍ର ଦେଶର ଯେ ସର୍ବମୟକର୍ତ୍ତା; ସେ ପୁଣି ତାକୁ କ୍ଷମା ମାଗୁଛନ୍ତି ମାତ୍ର ସେ ତ ନିକହିଲେ ପ୍ରଭୁ ତାକୁ ଛାଡ଼ଦେବେ

ନାହିଁ । ତା ଅନ୍ତରରୁ କ୍ରୋଧ ଉଠିଲା । ସେ ବାଧ୍ୟହୋଇ ବଡ଼ ସନ୍ତର୍ପଣରେ କହିଲା, "ହଜୁର, ମୁଁ ଆପଣଙ୍କୁ କ୍ଷମା ଦେଲି ।" ଏତିକ କଥାରେ ରାଜେନ୍ଦ୍ର ପ୍ରସାଦଙ୍କ ମନରୁ ଦୁଃଖକାଳିମା ଅନ୍ତର୍ହିତ ହେଲା । ସେ ନିଜର ଓ ଦେଶର କାମରେ ମନ ଦେଲେ ।

---



## ନିର୍ଭୀକତାର ସିଂହଛୁଆ
## ଉତ୍କଳଗୌରବ ମଧୁସୂଦନ ଦାସ

ସେ ଥିଲେ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ବରପୁତ୍ର । ତାଙ୍କର ଅକ୍ଳାନ୍ତ ଉଦ୍ୟମ ହେତୁ ଓଡ଼ିଶାର ନାମ ଭାରତ ମାନଚିତ୍ରରେ ସ୍ଥାନ ପାଇଲା । ସେ ଥିଲେ ଏକାଧାରରେ ସାମ୍ବାଦିକ, ଲେଖକ, ସୁବକ୍ତା, ଉତ୍ତମ ପାର୍ଲିଆମେଣ୍ଟାରିଆନ ଓ ପ୍ରବୀଣ ଆଇନଜ୍ଞ । ତାଙ୍କ ଜୀବନର ଶେଷ ପଚିଶ ବର୍ଷ ହିଁ ଉତ୍କଳ ଦେଶର ଅର୍ଦ୍ଧ ଶତାବ୍ଦୀର ଇତିହାସ । ସେ ଥିଲେ ଉତ୍କଳର ପ୍ରଥମ ଗ୍ରାଜୁଏଟ, ପ୍ରଥମ ଏମ୍. ଏ., ପ୍ରଥମ ଓକିଲ, ପ୍ରଥମ ଇଉରୋପ ଯାତ୍ରୀ ଓ ପ୍ରଥମ ଭାରତୀୟ ଯେ କି ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଅତି ଲୋଭନୀୟ ମନ୍ତ୍ରୀପଦ ପ୍ରତ୍ୟାଖ୍ୟାନ କରିଥିଲେ । ଏହି ମହାନ୍ ଓଡ଼ିଆଙ୍କୁ

ସମସ୍ତେ ଜାଣିବେଣି । ସେ ହେଉଛନ୍ତି କୁଳବୃଦ୍ଧ ଉତ୍କଳ ତଥା ଭାରତ ଗୌରବ ମଧୁସୂଦନ ଦାସ ।

ତାଙ୍କ ପିଲାଦିନର ଗୋଟିଏ ଘଟଣା । ସେତେବେଳେ ସେ କଟକର ଜିଲ୍ଲାସ୍କୁଲ ଆଧୁନିକ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଦଶମ ଶ୍ରେଣୀରେ ପାଠ ପଢ଼ୁଥିଲେ । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ନଥିଲା । କେହି ସ୍ୱପ୍ନରେ ଭାବିନଥିଲେ ଯେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବ । ସେତେବେଳେ ଓଡ଼ିଶା ଏକ ଡିଭିଜନ ଥିଲା । ଜଣେ କମିଶନର ଏହାର ଦାୟିତ୍ୱରେ ଥିଲେ । ଓଡ଼ିଶା ବଙ୍ଗ ପ୍ରଦେଶର ଏକ ଅଂଶ ଥିଲା । ଇଂରେଜମାନେ ସର୍ବପ୍ରଥମେ ବଙ୍ଗଳାକୁ ଅଧିକାର କରିଥିଲେ । ତେଣୁ ବଙ୍ଗାଳୀମାନେ ଇଂରେଜମାନଙ୍କର ଶିକ୍ଷାଧାରା ଓ ଭାଷାପ୍ରତି ଆନୁଗତ୍ୟ ପ୍ରକାଶ କରିଥିଲେ । ତେଣୁ ବଙ୍ଗଦେଶରେ ଇଂରେଜ ପଢ଼ୁଆ ଲୋକ ବେଶୀ ଥିଲେ । ସେମାନେ ଓଡ଼ିଶାର ପ୍ରଶାସନିକ-କ୍ଷେତ୍ରରେ ଇଂରେଜମାନଙ୍କୁ ସାହାଯ୍ୟ କରୁଥିଲେ । କଟକ ସ୍କୁଲରେ ବଙ୍ଗାଳୀ ପିଲାଙ୍କ ସଂଖ୍ୟା ବେଶୀ ଥିଲା । ଓଡ଼ିଆ ପିଲାଙ୍କ ସଂଖ୍ୟା ଅତି ନଗଣ୍ୟ ଥିଲା । ମଧୁସୂଦନ ମଫସଲ ଗାଁରୁ ଆସିଥିଲେ । ପୁରୁଣା ଢଙ୍ଗର ପୋଷାକ ପିନ୍ଧିଥିଲେ । ମୁଣ୍ଡରେ ଚୁଟି ରଖିଥିଲେ । ଖଦା, ଚଦରବୁଣା ମିରଜାଇ ପିନ୍ଧିଥିଲେ । ତେଣୁ ବଙ୍ଗାଳୀ ପିଲାମାନେ ତାଙ୍କୁ ଥଟ୍ଟା ପରିହାସ କରୁଥିଲେ । ଏହି ଥଟ୍ଟା ପରିହାସ ବଢ଼ିବାରେ ଲାଗିଲା । ମଧୁପାଖରେ ଏ ସବୁ ବଡ଼ ଅସହ୍ୟ ବୋଧହେଲା । ହାଇସ୍କୁଲରେ ହେଡ଼ମାଷ୍ଟର ଥିଲେ ଜଣେ ବଙ୍ଗାଳୀ ଭଦ୍ରଲୋକ । ତାଙ୍କର ନାମ ଚଣ୍ଡୀଚରଣ ବାନାର୍ଜୀ । ସେ ଯୁବକ ଲୋକ ଥିଲେ ଓ ନୂଆ ହୋଇ ବଙ୍ଗଳାରୁ ଆସିଥିଲେ । ସେତେବେଳକାର ଏକ ବଶିଷ୍ଟ ଘଟଣାରୁ ମଧୁସୂଦନଙ୍କ ଭବିଷ୍ୟତ ଜୀବନର ସୂଚନା ମିଳିଲା । ସେ ଶ୍ରେଣୀରେ ଏକ ଇଂରାଜୀ ସାହିତ୍ୟ ପୁସ୍ତକ ପଢ଼ାଯାଉଥିଲା । ପ୍ରଧାନ ଶିକ୍ଷକ ମହାଶୟ ପଢ଼ାଉଥିବାବେଳେ ଗୋଟିଏ ଇଂରାଜୀ ବାକ୍ୟର ଅର୍ଥ ଯାହା ପ୍ରକାଶ କଲେ ସେଥିରେ ମଧୁସୂଦନ ଏକମତ ହେଲେନାହିଁ । ତେଣୁ ମଧୁ ହାତ-

ଯୋଡ଼ି ସାହସବାନ୍ଧି ଠିଆହୋଇ ନମ୍ରଭାବରେ କହିଲେ, "ମହାଶୟ, ଏ ଅର୍ଥ ଠିକ୍ ନୁହେଁ ।" । ମଧୁ ଏକେତ ଓଡ଼ିଆପିଲା, ପୁଣି ଶ୍ରେଣୀରେ ଏତେ ପିଲାଙ୍କ ମଧ୍ୟରେ ପ୍ରଧାନ ଶିକ୍ଷକଙ୍କର ଭୁଲ ବାହାର କରିଦେବାରୁ ପ୍ରଧାନଶିକ୍ଷକ ବଡ଼ ଅପମାନିତ ହେଲେ । ବଙ୍ଗାଳୀ ପିଲାଙ୍କ ମଧ୍ୟରେ ବଙ୍ଗାଳୀଶିକ୍ଷକ ଲଜ୍ଜିତ ହେଲେ । ମଧୁସୂଦନ ଶ୍ରେଣୀରେ ଏପରି କହିବାଟାକୁ ସେ ପସନ୍ଦ କଲେନାହିଁ । କ୍ରୁଦ୍ଧ ମଧ୍ୟ ହେଲେ । ମଧୁସୂଦନର ନାମ ସ୍କୁଲ ରେଜିଷ୍ଟରରୁ କାଟିଦେଲେ ଏବଂ ମଧୁକୁ ସ୍କୁଲରୁ ବାହାର କରିଦେଲେ ।

ମଧୁସୂଦନ କେବେ ଏପରି ଆଶା କରିନଥିଲେ । ତାଙ୍କ ମୁଣ୍ଡରେ ଯିନା ଚଡ଼କ ପଡ଼ିଲା, ମାତ୍ର କଟକ ସହରରେ ଏହି ଘଟଣା ଚହଳ ପକାଇଦେଲା । କଟକ ସହର ଓଡ଼ିଶାର କେନ୍ଦ୍ରସ୍ଥଳ ଥିଲେ ମଧ୍ୟ ବଙ୍ଗାଳୀମାନଙ୍କର ସେତେବେଳେ ତଡ଼ିଭୂଇଁ ଥିଲା । ପାଠୁଆ ଓଡ଼ିଆଙ୍କ ସଂଖ୍ୟା ନଗଣ୍ୟ । ଓଡ଼ିଆ ପିଲାଙ୍କ ମନରେ ଭୟ ସଞ୍ଚାର ହୋଇଗଲା । ପୁଣି ଗଳ କନ୍ଧ କଚେରୀ ବାରେରୀ ସବୁଠାରେ ବଙ୍ଗାଳୀ । ଏଥିରେ ଓଡ଼ିଆମାନଙ୍କର ଭୟ ହେବା ସ୍ୱାଭାବିକ । ଯେତେବେଳେ ହେଡ୍-ମାଷ୍ଟର ମଧୁସୂଦନଙ୍କୁ ତଡ଼ିଦେଲେ, ସେତେବେଳେ ଓଡ଼ିଆଙ୍କ ଭିତରେ ଗୋଟିଏ କୋହୁଆ ଭୟ ହେଲା । ଓଡ଼ିଆ ସାଙ୍ଗ ସାଥୀମାନେ ମଧୁକୁ ଡାକି କହିଲେ, "ମଧୁ, ପ୍ରଧାନ ଶିକ୍ଷକଙ୍କ ନିକଟକୁ ଯାଇ କ୍ଷମାପ୍ରାର୍ଥନା କର । ପୁଣି ପାଠ ପଢ଼ ।" ଅବଶ୍ୟ ମଧୁସୂଦନ ମନରେ ଗଭୀର ଦୁଃଖ ଜାତ ହୋଇଗଲା । ସେ ଆଉ ପଢ଼ିପାରିବେ କି ନାହିଁ ଭାବି ସେ ବଡ଼ ବିବ୍ରତ ଓ ଚିନ୍ତିତ ହୋଇପଡ଼ିଲେ । କେତେଲୋକ କେତେକଥା କହିଲେ । ମଧୁସୂଦନ ସବୁ ମୁଣ୍ଡପାତି ସହିଲେ ମାତ୍ର ତାଙ୍କ ସ୍ୱାଧୀନ ଚିତ୍ତରେ ସେ ବିଚାରକଲେ ସେ ତ କିଛି ଭୁଲ କରିନାହାନ୍ତି । ସତକଥାଟା କହିଦେଇଛନ୍ତି ସେ ଯାହା ବୁଝିଛନ୍ତି ତାହାହିଁ ପ୍ରକୃତ ଅର୍ଥ । ସେ ଭାବୁଥିଲେ ସେ ଇଂରାଜୀରେ ଉତ୍ତମ ଜ୍ଞାନ ଅର୍ଜନ କରି ନପାରିଲେ ତାଙ୍କର ଭବିଷ୍ୟତ ଅନ୍ଧକାରମୟ ହୋଇଯିବ । ଯଦି ସତ୍ୟକଥାଟି କହିବାରୁ ସେ ବିଦ୍ୟାଳୟରୁ ତଡ଼ା ଖାଇଲେ ତେବେ କ'ଣ କଲେ ସେ ସୁଖୀ ହେବ ?

ସାରା ରାତି ଭାବି ଭାବି ସେ ବଡ଼ ଅସହାୟତା ଅନୁଭବ କଲେ । ବନ୍ଧୁମାନଙ୍କର ଉପଦେଶ ତାଙ୍କ ବିବେକ ବିରୁଦ୍ଧରେ ଗଲା । ସେ ବଡ଼ ଆତ୍ମାଭିମାନୀ ଥିଲେ । ତେଣୁ ସେହି ବିଦ୍ୟାଳୟର ଉଚ୍ଚ କର୍ମକର୍ତ୍ତା କଲେକ୍ଟର ହିଲେ ସାହେବଙ୍କ ନିକଟକୁ ଯାଇ ଫେରିାଦ ହେବେ ବୋଲି ସ୍ଥିର କଲେ । ରାତି ପାହିଲା । ମଧୁ ଶୀଘ୍ର ନିତ୍ୟକର୍ମ ଶେଷ କଲେ । ପ୍ରସ୍ତୁତ ହେଲେ ସାହେବଙ୍କ ପାଖକୁ ଯିବା ପାଇଁ । ଠିକ୍ ୮ଟା ସମୟରେ ମଧୁ ଓଡ଼ିଆ ପୋଷାକ ପିନ୍ଧି ହାଲେ ସାହେବଙ୍କୁ ସାକ୍ଷାତ କଲେ । ସାହେବ ଘର ଭିତରୁ ହଠାତ୍ ବାହାରି ଆସି ଓଡ଼ିଆରେ ପଚାରିଲେ, "କ'ଣ ଚାହୁଁଛ ?" ମଧୁସୂଦନ ସାହେବଙ୍କୁ ସମସ୍ତ କଥା ବୁଝାଇ କହିଲେ । ସେହି ଇଂରାଜୀ ବାକ୍ୟର ଅର୍ଥ ଯେପରି ବୁଝିଥିଲେ ତାହା ମଧ କହିଲେ । ହେଡ୍‌ମାଷ୍ଟର କପରି ବୁଝିଲେ ତାହା ମଧ କହିଲେ । ଏ ସବୁ ଶୁଣି ସାହେବ ଟିକିଏ ମୁରୁକି ହସିଲେ ଓ ସେ କି ଜାତିର ଲୋକ ଅର୍ଥାତ୍ ବଙ୍ଗାଳୀ ନା ଓଡ଼ିଆ ପଚାରିଲେ । ସବୁ ବୁଝି ସାରିବାପରେ ସେ ମଧୁସୂଦନଙ୍କୁ କହିଲେ, "ଆଚ୍ଛା ମୁଁ ଆସନ୍ତା କାଲି ତୁମ ବିଦ୍ୟାଳୟକୁ ଯିବି । ତୁମେ ୧୧ଟାରେ ଅପେକ୍ଷା କରିବ ।" ଏଥିରୁ ଜଣାପଡ଼ିଲା ମଧୁସୂଦନ ଯେଉଁ ଅର୍ଥ ବୁଝିଥିଲେ ତାହା ଠିକ୍ । ପରଦିନ ମଧୁ ସ୍କୁଲ ଗେଟ୍ ନିକଟରେ ସାହେବଙ୍କୁ ଅପେକ୍ଷା କଲେ । ସାହେବ ଠିକ୍ ସମୟରେ ବିଦ୍ୟାଳୟ ଫାଟକ ନିକଟରେ ପହଞ୍ଚିଲେ । ମଧୁସୂଦନ ସାହେବଙ୍କୁ ପ୍ରଣାମ କଲେ । ସାହେବ ବିଦ୍ୟାଳୟ ଭିତରେ ପ୍ରବେଶ କଲେ । ପ୍ରଧାନ ଶିକ୍ଷକଙ୍କ ସହ କିଛି ସମୟ ଆଲୋଚନା କରି କୋଠରୀରୁ ପ୍ରସ୍ଥାନ କଲେ । ମଧୁ ଫାଟକ ନିକଟରେ ବୁଲୁଥିଲେ । ସାହେବଙ୍କ ପ୍ରସ୍ଥାନ ପରେ ପ୍ରଧାନ ଶିକ୍ଷକ ମଧୁସୂଦନଙ୍କୁ ଡକାଇ ପଠାଇଲେ ଏବଂ ତାଙ୍କୁ କ୍ଷମା ଦେଇଛନ୍ତି ବୋଲି କହିଲେ । ମଧୁର ନାମ ପୁଣି ବିଦ୍ୟାଳୟରେ ଲେଖାଗଲା ।

ମଧୁସୂଦନ ନିଜ ଅସମ୍ପୂର୍ଣ୍ଣ ଆତ୍ମଚରିତରେ ଉଲ୍ଲେଖ କରିଅଛନ୍ତି—"ସେହି ଦିନଠାରୁ ମୋର ନିର୍ଭିକତା ବଢ଼ିଗଲା । ମୋର ନାମ ସହର ଲୋକଙ୍କ ମଧ୍ୟରେ ବିସ୍ମୟ ତଥା ଆଗ୍ରହ ସୃଷ୍ଟି କଲା । ବଙ୍ଗାଳୀ

ସହପାଠୀମାନଙ୍କର ଦୌରାତ୍ମ୍ୟ ଯଥେଷ୍ଟ କମିଗଲା । ମଧୁସୂଦନ ପାଖେ କିଛି ଅଦ୍ଭୁତ ଶକ୍ତି ଅଛି ବୋଲି ସେମାନେ ଭାବିଲେ ।”

ସେହି ଦିନଠାରୁ ମଧୁସୂଦନଙ୍କ ଉଚ୍ଚାଭିଳାଷର ପଥ ଖୋଲିଗଲା । ସେ ଭବିଷ୍ୟତରେ ଗୋଟିଏ ପୁରାତନ ଜାତିର ଯେ କର୍ଣ୍ଣଧାର ହେବେ ଏହା ଉତ୍ତମରୂପେ ଜଣା ପଡ଼ିଗଲା ।

---



## ଅଦ୍ଭୁତ ଯାଦୁକର
## ପଣ୍ଡିତ ଶ୍ରୀ ଜବାହରଲାଲ ନେହରୁ

ଭାରତ ଇତିହାସରେ ସେ ଚିର ଜାଜ୍ୱଲ୍ୟମାନ । ତାଙ୍କର ଚିନ୍ତାଧାର ଅମଳିନ । ମୃତ୍ୟୁ ତାଙ୍କୁ ମାରିପାରିବ ନାହିଁ । ସେ ଥିଲେ ଯୁଗପୁରୁଷ ଓ ଅମୃତର ସନ୍ତାନ । ତାଙ୍କର ସ୍ୱର୍ଗୀୟ ଗୁଣାବଳୀ ହେତୁ ଚିରକାଳ ଭାରତବାସୀଙ୍କ ହୃଦୟରେ ସେ ସ୍ଥାନ ପାଉଥିବେ । ବିଶ୍ୱର କୋଟି-କୋଟି ନିପୀଡ଼ିତ, ଦଳିତ ଜାତି ଓ ଦେଶମାନଙ୍କର ସେ ଥିଲେ ପରମ ବନ୍ଧୁ । ସେ ଥିଲେ ସମସ୍ତଙ୍କଠାରୁ ବଳି ଦେଶପ୍ରେମୀ ଓ ଦେଶ ସେବକ । ତେଣୁ ମୃତ୍ୟୁର ବହୁ ପୂର୍ବରୁ ସେ ଲେଖି ଯାଇଥିଲେ—"ଏହି ବ୍ୟକ୍ତି ଯେ ମନ ପ୍ରାଣଦେଇ ଐକାନ୍ତିକ ଭାବରେ ଭଲ ପାଉଥିଲା ନିଜ ମାତୃଭୂମି ଭାରତକୁ ଓ ଭାରତ ଜନତାଙ୍କୁ ଏବଂ ପ୍ରତିଦାନରେ ଭାରତୀୟ ଜନତା ଯାହାପ୍ରତି ଗଭୀର ଆସକ୍ତିର ସହ ଅକୁଣ୍ଠ ଚିତ୍ତରେ ଢାଳି ଦେଇଥିଲା ପ୍ରଚୁର ପ୍ରେମ ଓ ଅନାବିଳ ସ୍ନେହ ।"

ଏହି ମହାନ୍ ବ୍ୟକ୍ତି କିଏ ଜାଣ ? ସେ ହେଉଛନ୍ତି ଯୁଗଜ୍ୟୋତି ଜବାହରଲାଲ । ଏହି ମହାନ୍ ବ୍ୟକ୍ତି କେବଳ ନିଜ ଜନ୍ମଭୂମିର ଯେ ସ୍ନେହ ଶ୍ରଦ୍ଧା ଲାଭ କରିଥିଲେ ତାହା ନୁହେଁ ପୃଥିବୀର ବହୁ କ୍ଷୁଦ୍ର ଓ ବୃହତ୍ ଦେଶବାସୀଙ୍କର ମାନସ ରାଜ୍ୟରେ ଉଚ୍ଚଆସନ ଅଳଂକୃତ କରିଥିଲେ । ତାଙ୍କର ସମଗ୍ର ଜୀବନଟା କୋଟି-କୋଟି ଅଗଣିତ ନର-ନାରୀଙ୍କର ଅମୂଲ୍ୟ ଗନ୍ତାଘର । ସେ ଥିଲେ ପରାଧୀନ ଭାରତର ବିଶିଷ୍ଟ ଯୋଦ୍ଧା । ସ୍ୱାଧୀନତା ପରଠାରୁ ଦୀର୍ଘ ସତର ବର୍ଷକାଳ ଏ ବିରାଟ ଦେଶରେ ସର୍ବାଧିନାୟକ ପ୍ରଧାନମନ୍ତ୍ରୀ ଆସନ ଅଳଂକୃତ କରି ଗଣତନ୍ତ୍ର ଶାସନାଧାରକୁ ଏ ଦେଶରେ ଦୃଢ଼ୀଭୂତ କରିଥିଲେ । କଂଗ୍ରେସ ଅନୁଷ୍ଠାନ ଉପରେ ନଜର କଣ୍ଟକିତ୍ୱ ଜାରୀକରି ସେ ତାକୁ ଖଣ୍ଡ ଖଣ୍ଡ କରି ପକାଇ-ଥାନ୍ତେ । କିମ୍ବା ରାଜନୀତିକ ବିରୋଧୀମାନଙ୍କ ଯୋଗୁଁ ଦେଶରେ ଜରୁରୀକାଳୀନ ପରିସ୍ଥିତି ସୃଷ୍ଟି କରି ମହା ଆଲୋଡ଼ନ ଘଟାଇପାରି-ଥାନ୍ତେ । ସେ ନଥିଲେ ହିଟଲର ବା ମୁସୋଲିନ୍ । ତାଙ୍କଠାରେ ଧୀଶକ୍ତି ଯେପରି ଥିଲା, ବିଚାରଶକ୍ତି ସେହିପରି ଥିଲା । ହୃଦୟବତ୍ତା ତଥା ମାନବିକତାର ମଣି କାଞ୍ଚନ ସଂଯୋଗ ତାଙ୍କ ଜୀବନର ଗତିପଥକୁ ଉଜ୍ଜ୍ୱଳିତ କରିପାରିଥିଲା । ସେ ଥିଲେ କୋଟି ହୃଦୟର ଈଶ୍ୱର । ଭାରତ ଜନଗଣଙ୍କର ସେ ଯେପରି ପ୍ରଭୁ ହୋଇ ପାରିଥିଲେ ତାର ସୁଯୋଗ ନେଇ ସେ ସୁକର୍ଣ୍ଣଙ୍କପରି ଏକଚ୍ଛତ୍ରବାଦୀ ହୋଇ ପାରିଥାନ୍ତେ । କିନ୍ତୁ ସେ ଥିଲେ ଗଣତନ୍ତ୍ରର ଏକନିଷ୍ଠ ପୂଜାରୀ । ସମଗ୍ର ମାନବ ସମାଜରୁ ତଥା ପୃଥିବୀରୁ ଯୁଦ୍ଧ ବିଗ୍ରହ ଦୂର କରିବାପାଇଁ, ବିଶ୍ୱକୁ ଧ୍ୱଂସମୁଖୀରୁ ଫେରାଇ ଆଣିବା ପାଇଁ ସେ ପ୍ରଚଳନ କରିଥିଲେ ପଞ୍ଚଶୀଳନୀତି । ତେଣୁ ଏ ଜାତିର ଜନକ ମହାତ୍ମାଗାନ୍ଧୀ ତାଙ୍କର ପ୍ରଜ୍ଞାରେ ବିମୋହିତ ହୋଇ ତାଙ୍କୁ ତାଙ୍କର ଯୋଗ୍ୟ ଉତ୍ତରାଧିକାରୀ ରୂପେ ବାଛି ନେଇଥିଲେ ।

୧୯୫୪ ମସିହା । ସେ ବର୍ଷ ବନ୍ୟାର ପ୍ରକୋପ ଉତ୍ତର ପ୍ରଦେଶ, ଉତ୍ତର ବିହାର, ଉତ୍ତର ବଙ୍ଗରେ ବେଶି ଅନୁଭୂତ ହୋଇଥିଲା । ବନ୍ୟା ମନ୍ବନ୍ତରର ଦେଶ ଏହି ଭାରତବର୍ଷ । କେଉଁ ବର୍ଷ ଅତ୍ୟଧିକ

ବୃଷ୍ଟି ଯେପରି ବନ୍ୟାର କରାଳ ତାଣ୍ଡବ ଲଗାଇ ଦେଉଥିଲା କେଉଁ ବର୍ଷ ଅନାବୃଷ୍ଟି ମରୁଡ଼ିର ବିକଟାଳ ଦୃଶ୍ୟରେ ହୃଦୟ ପ୍ରକମ୍ପିତ ହେଉଥିଲା । ଦଳମତ ନିର୍ବିଶେଷରେ ସେ ଥିଲେ ସମସ୍ତଙ୍କର ପ୍ରିୟ । ସ୍ୱଦଳ ହେଉ ବା ବିରୋଧୀ ଦଳ ହେଉ କାହା ପ୍ରତି ସେ ଅନାସ୍ଥାଭାବ ପୋଷଣ କରୁ ନଥିଲେ । ତେଣୁ ସେ ସମସ୍ତଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ଭାରତ ପାର୍ଲିଆମେଣ୍ଟରେ ତାଙ୍କର ପ୍ରତିଷ୍ଠା ଅତି ଉଚ୍ଚ-କୋଟୀର ଥିଲା । ଏ ବର୍ଷ ପ୍ରଳୟଙ୍କରୀ ବନ୍ୟାର ବିକଟ ରୂପ । ନିଜେ ଜବାହରଲାଲ୍ ବନ୍ୟାଞ୍ଚଳ ପରିଦର୍ଶନ କରିବାକୁ ତତ୍ପର ହେଲେ । ଦଳ ଦଳ ଧରି ସମସ୍ତଙ୍କୁ ସଙ୍ଗରେ ନେଇ ସେ ଚାଲିଲେ ସେଇ ଅଗଣିତ ନିରୀହ ଜନତା ପାଖକୁ, ସାହାଯ୍ୟ ବଣ୍ଟନର ବ୍ୟବସ୍ଥା କରିବା ପାଇଁ । ସେପ୍ଟେମ୍ବର ୫ ତାରିଖ ଦିନ କୁଚ-ବିହାର ବିମାନ ଘାଟୀରେ ଓହ୍ଲାଇ ପଡ଼ିଲେ । ହଜାର ହଜାର ଲୋକଙ୍କ ସମାଗମ ପଣ୍ଡିତ ନେହେରୁଙ୍କୁ ସମ୍ମାନ ଜଣାଇବା ପାଇଁ । ପଶ୍ଚିମବଙ୍ଗ ଖୁବ୍ ତତ୍ପର ଥିଲା । ସେଠାକାର ମୁଖ୍ୟମନ୍ତ୍ରୀ ବିଧାନଚନ୍ଦ୍ର ରାୟ ଓ ଅନ୍ୟାନ୍ୟ ମନ୍ତ୍ରୀଗଣ ଉପସ୍ଥିତ ପୋଲିସ ବିଭାଗ ଓ ରାଜ୍ୟର ଉଚ୍ଚ କର୍ମକର୍ତ୍ତାଗଣ ସମସ୍ତେ ସଜାଗ । ଏତିକବେଳେ ଏକ ପ୍ରକାଣ୍ଡ ଉଚ୍ଛୃଙ୍ଖଳ ଜନତା ପୋଲିସ କର୍ଡ଼ନ ଭାଙ୍ଗି ଚାଲି ଆସୁଥିଲେ । ସେମାନେ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲେ । ଯେତେବେଳେ ସେହି ଜନ ସମୁଦ୍ର ମାଡ଼ି ଆସୁଥିଲା ସେତେବେଳେ ସ୍ଲୋଗାନ ଦେଉଥିଲା "ଆମେ ମାଗିଲୁ ରୋଟି, ପାଇଲୁ ଗୁଳି ।" ଘଟଣାଟା ଅଛପା ରହିଲା ନାହିଁ । କୁଚବିହାରରେ ଦୁର୍ଭିକ୍ଷ ପରିସ୍ଥିତି ହେତୁ କମ୍ୟୁନିଷ୍ଟ ପରିଚାଳିତ ଏକ ବିରାଟ ପଟୁଆର ଆସୁଥିବାବେଳେ ଶାନ୍ତିଭଙ୍ଗର ଆଶଙ୍କାରେ ପୁଲିସ ଗୁଳି ଚଳାଇଥିଲା ଏବଂ ସେଥିରେ କେତେକ ପ୍ରାଣ ହରାଇଥିଲେ । ପଶ୍ଚିମବଙ୍ଗ ସରକାରର ତଦନ୍ତ କମିଟି ଏ ପର୍ଯ୍ୟନ୍ତ କୌଣସି ରିପୋର୍ଟ ପ୍ରକାଶ କରି ନଥିଲେ । ଏତିକିବେଳେ ପଣ୍ଡିତ ନେହେରୁ ସେଠାକୁ ଆସିଲେ । ତେଣୁ ସେମାନଙ୍କୁ ମଉକା ମିଳିଗଲା । ସେମାନଙ୍କ କୋପ ବହୁଗୁଣରେ ପ୍ରକଟିତ କରିବା ପାଇଁ । ତେଣୁ ବିକ୍ଷୋଭକାରୀମାନେ ନାନା ଉତ୍ତେଜିତ ସ୍ଲୋଗାନ-

ଦେଇ ବହୁ ସଂଖ୍ୟାରେ ବିମାନଘାଟି ଗ୍ରିଲପଟେ ବିଛେଇ ହୋଇଗଲେ । ଏପରି ପରିସ୍ଥିତି ସମ୍ଭାଳିବା ପୋଲିସମାନଙ୍କର ଶକ୍ତିର ବାହାରେ ଥିଲା । ଯେତେବେଳେ ନେହୁରୁ ବିମାନରୁ ଅବତରଣ କଲେ, ମୁଖ୍ୟମନ୍ତ୍ରୀ ତାଙ୍କୁ ଏକ ଗୋଲାପ ଗୁଚ୍ଛ ଉପହାର ଦେବାପାଇଁ ଉଦ୍ୟତ ହେଲେ । ମାତ୍ର ଉତ୍‌କ୍ଷିପ୍ତ ନେହୁରୁ ଗୋଲାପ ଫୁଲରେ ସନ୍ତୁଷ୍ଟ ହେବାର ପାତ୍ର ନଥିଲେ, ସେ ବଡ଼ ବିବ୍ରତପରି ଜଣା ପଡ଼ୁଥିଲେ । ସେ ଦୃଢ଼ ସ୍ୱରରେ କହିଲେ, "ସେ ଲୋକମାନେ କାହାନ୍ତି ? ମୁଁ କ'ଣ ଏତେବାଟ ତୁମମାନଙ୍କ ମୁହଁ ଦେଖିବାକୁ ଆସିଛି ?" ଆଉ କିଛି ସେ କହିଲେ ନାହିଁ । ସେ ଲମ୍ବ ପାହୁଣ୍ଡ ପକାଇ ବିକ୍ଷୁବ୍‌ଧ ଜନତା ଆଡ଼କୁ ଦ୍ରୁତ ଗତିରେ ମାଡ଼ିଗଲେ । ଉତ୍ତ୍ୟକ୍ତ ଜନତା ସେତେବେଳେ ଖୁବ୍ ହିଂସ୍ରପରି ଜଣା ପଡ଼ୁଥିଲା । ମାତ୍ର ଏହାକୁ ଭ୍ରୂକ୍ଷେପ ନକରି ସମସ୍ତ ନିରାପତ୍ତାରକ୍ଷୀମାନଙ୍କୁ ତ୍ୟାଗକରି ସେ ସେହି ଜନଗହଳରେ ଲୁଚିଗଲେ । ଏଣେ ପଶ୍ଚିମବଙ୍ଗ ସରକାରଙ୍କ ଅତିଥି ସେବକଗଣ ବଡ଼ ଉଦ୍‌ବିଗ୍ନ । କାଳେ କିଛି କ୍ଷତି ହୋଇଯିବ ଏହି ଭୟରେ ବଙ୍ଗ ସରକାର ଗଭୀର ଚିନ୍ତାକୁଳ । ମାତ୍ର ଯେ ଜନତାର ପ୍ରିୟତମ ନେତା, ସର୍ବସାଧାରଣଙ୍କର ଅତି ଆପଣାର ତାଙ୍କର କ୍ଷତିହେବ କ'ଣ ?

ସେ ଯେପରି ଭାରତୀୟ ଜନତାକୁ ପ୍ରେମ କରୁଥିଲେ ଜନତା ମଧ ତାଙ୍କ ଉପରେ ସେହିପରି ଅନାବିଳ ପ୍ରେମଭକ୍ତି ଢାଳି ଦେଇଥିଲା । ଅଧଘଣ୍ଟାଏ ପର୍ଯ୍ୟନ୍ତ ସେ ବିକ୍ଷୁବ୍‌ଧ ହିଂସ୍ର ଜନତା ମଧ୍ୟରେ କଟାଇ ଯେତେବେଳେ ସେ ସେମାନଙ୍କ ଲୌହ ବ୍ୟୁହ ମଧ୍ୟରୁ ହସ-ହସ ମୁହଁରେ ବାହାରିପଡ଼ିଲେ ସେତେବେଳେ ସେମାନେ ଯେଉଁ ଉତ୍ତେଜିତ ଅତୃପ୍ତିକର ସ୍ଲୋଗାନ ଦେଉଥିଲେ ତାହା ପରିବର୍ତ୍ତେ ନୂଆ ହର୍ଷପ୍ରୀତିମୟ ତଥା ସମ୍ମାନଜନକ ସ୍ଲୋଗାନ ଉଚ୍ଚାରଣ କରିବାରେ ଲାଗିଲେ । ପରେ ପରେ 'ଜବାହରଲାଲ୍ କି ଜିନ୍ଦାବାଦ୍,' 'ସ୍ୱାଧୀନ ଭାରତ କି ଜୟ' ଧ୍ୱନିରେ ବିମାନଘାଟି ଉଚ୍ଛୁଳି ପଡ଼ିଲା । ଏତେବଡ଼ ଅଶାନ୍ତ ବିକ୍ଷୁବ୍‌ଧ ବିଶୃଙ୍ଖଳ ଜନତା ମୁହୂର୍ତ୍ତକ ମଧ୍ୟରେ କାହିଁରି ହାତର ପରଶରେ ନିରୀହ ଶିଶୁମାନଙ୍କ ପରି ସମ୍ପୂର୍ଣ୍ଣ ପୋଷା ମାନିଗଲେ । କି ଅଦ୍ଭୁତ ଶକ୍ତି, କି

ଅଦ୍ଭୁତ ଜାଦୁକର ବିଦ୍ୟା । ସେ ଥିଲେ ମାନବିକତାର ଏକ ମୂର୍ତ୍ତିମନ୍ତ ଅବତାର । ତେଣୁ କ୍ଷମତା ଲୋଭରେ ନୁହେଁ ଉଦାର ମାନବିକତା ଗୁଣ ଯୋଗୁଁ ସେ କୋଟି ହୃଦୟକୁ ଅକ୍ଳେଶରେ ଜୟ କରିପାରିଥିଲେ ।

ଆଉ ଗୋଟିଏ ଘଟଣା, ୧୯୫୩ ମସିହା କଥା । ଉତ୍ତର ପ୍ରଦେଶର କାନପୁର ସହରର ବାଧ୍ୟତାମୂଳକ ଚିକିତ୍ସା ଯୋଜନା ଉଦ୍‌ଘାଟନ କରିଥିଲେ ପ୍ରଧାନ ମନ୍ତ୍ରୀ ପଣ୍ଡିତ ନେହରୁ । ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ ସମୟ ଆଗରୁ ସ୍ଥିରିକୃତ ହୋଇଥିଲା । ମାତ୍ର ଶ୍ରମିକପ୍ରେମୀ ନେହରୁ ବିଶ୍ରାମ ନନେଇ ଏହି ପ୍ରଥାର ବ୍ୟତିକ୍ରମ କରି ମଧ୍ୟାହ୍ନ ସମୟରେ ଶ୍ରମିକ ବସ୍ତି ପରିଦର୍ଶନ କରିବାକୁ ବାହାରି ପଡ଼ିଲେ । ଡ୍ରାଇଭର ତାଙ୍କୁ ବହନକରି ନେଇଗଲା ଏକ ଶ୍ରମିକ ବସ୍ତିକୁ । ସଙ୍ଗରେ ଭାରତର ତତ୍କାଳୀନ ଶ୍ରମ ମନ୍ତ୍ରୀ ଶ୍ରୀ ଜଗଜ୍ଜୀବନରାମ ମଧ୍ୟ ଥିଲେ । ଶ୍ରମିକ ବସ୍ତିର ଘରଦ୍ୱାରଗୁଡ଼ିକ ସେ ବୁଲିବାକୁ ଲାଗିଲେ । ଜୀର୍ଣ୍ଣ ଶୀର୍ଣ୍ଣ ବସ୍ତି ଓ କଦର୍ଯ୍ୟ ପରିସ୍ଥିତି ଦେଖି ସେ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲେ । ଅଧିକାଂଶ ଗୃହ ଅସ୍ୱାସ୍ଥ୍ୟକର ଓ ବାସଯୋଗ୍ୟ ନୁହେଁ । ସେ ଥିଲେ କ୍ଷଣକୋପୀ । ହଠାତ୍ କହି ପକାଇଲେ, "କାନପୁର ଉନ୍ନୟନ ବୋର୍ଡ଼ର ଚେୟାରମ୍ୟାନ କିଏ ସେ ?" ଚେୟାରମ୍ୟାନ ଶ୍ରୀଯୁକ୍ତ ସ୍ୟାନାଲ ଭୟାତୁର ହୋଇ ସେଠାରେ ଠିଆ ହୋଇଗଲେ । ସାଙ୍ଗେ ସାଙ୍ଗେ ନେହରୁ ସରକାରଙ୍କ ଶ୍ରମ ମନ୍ତ୍ରୀଙ୍କୁ ବଜ୍ର ଗମ୍ଭୀର ସ୍ୱରରେ କହି ଉଠିଲେ, "ଆପଣ ଏ ପର୍ଯ୍ୟନ୍ତ କିପରି ଏ ଅକାମୀ ଲୋକଟାକୁ ବରଖାସ୍ତ କରି ନାହାନ୍ତି ?" ଶ୍ରମମନ୍ତ୍ରୀ ଅଫିସରଙ୍କୁ ବଞ୍ଚାଇଦେଲେ । କହିଲେ, "ଆଜ୍ଞା ସାନ୍ୟାଲଙ୍କର କୌଣସି ଦୋଷନାହିଁ । ଏଭଳି ଘରଗୁଡ଼ାକ ଭାଙ୍ଗି ଭଲଘର ତିଆରି କରିବା ପାଇଁ ସେ ବହୁବାର ସରକାରଙ୍କୁ ଟଙ୍କା ମାଗିଲେଣି । ମାତ୍ର ଆପଣଙ୍କ ଅର୍ଥବିଭାଗ ଟଙ୍କା ଦେଉନାହିଁ ।" ଏହି ଉତ୍ତରରେ ନେହରୁଙ୍କ କ୍ରୋଧ ହଠାତ୍ ଦମିତ ହୋଇଗଲା । ସେ ତୀକ୍ଷ୍ଣ ଦୃଷ୍ଟିରେ ମନ୍ତ୍ରୀଙ୍କ ଆଡ଼କୁ ଚାହିଁରହିଲେ । ସାନ୍ୟାଲ୍ ରକ୍ଷା ପାଇଗଲେ । ପରେ ପରେ ନେହରୁ ଧୀର ଅଥଚ ଗମ୍ଭୀର ଭାବରେ ଶ୍ରମ ମନ୍ତ୍ରୀଙ୍କୁ କହିଲେ, "କାଲି

ଦିଲ୍ଲୀରେ ପହଞ୍ଚିବା ମାତ୍ରେ ଏ କାମପାଇଁ ଟଙ୍କା ଦିଆଯିବ ।" ତାପରେ ଶ୍ରୀ ସାନ୍ୟାଲଙ୍କ ଆଡ଼କୁ ଦୃଷ୍ଟି ଫେରାଇ ସେ କହିଲେ, "ଏ ସବୁ ବସ୍ତିରେ ନିଆଁ ଲଗାଇଦିଅ । ସାତ ଦିନ ମଧ୍ୟରେ ତୁମେ ଟଙ୍କା ପାଇଯିବ । ଭଲ ଘର ତୋଳିବାପାଇଁ ଆଜିଠାରୁ ବ୍ୟବସ୍ଥା କର ।"

ଏହାପରେ କେବଳ କାନପୁରର ଆବର୍ଜନା ବସ୍ତିକୁ ଯେ ଅଜସ୍ର ଟଙ୍କାର ସୁଅ ଛୁଟିଲା ତାହା ନୁହେଁ ପ୍ରତି ପ୍ରାଦେଶିକ ସରକାରମାନେ ମଧ୍ୟ ଶ୍ରମିକ ବସ୍ତି ନିମନ୍ତେ ପ୍ରଚୁର ଅର୍ଥ ପାଇଲେ ଏବଂ ହଜାର-ହଜାର ସଂଖ୍ୟାରେ ଶ୍ରମିକ ବସ୍ତି ନିର୍ମାଣ କରାଗଲା ।

ଶ୍ରମିକ ବନ୍ଧୁ ନେହେରୁ ଜାତି ମାନସପଟରେ ଚିରକାଳ ଅମର ହୋଇ ରହିବେ ନାହିଁ ତ ଆଉ କିଏ ରହିବ ? ଧନାଢ୍ୟ ଓ ଆଭିଜାତ୍ୟ ପରିବାରରେ ଜନ୍ମଲାଭ କରିଥିଲେ ହେଁ ଦରିଦ୍ର ଭାରତୀୟ ଜନତାର ସୁଖ ଦୁଃଖ ବୁଝିବାରେ ସେ ଥିଲେ ଅଗ୍ରଣୀ । ସେ ଥିଲେ ସବୁଠାରୁ ବଳି ସମାଜବାଦୀ ତଥା ଗଣତନ୍ତ୍ରବାଦୀ । ଏ ଜାତି ଏ ଦେଶ ଚିରକାଳ ତାଙ୍କର ନାମ ଘୋଷି ହେଉଥିବ ।

———



## ବିପ୍ଳବର ଅଗ୍ନି-ସ୍ଫୁଲିଙ୍ଗ
## ନେତାଜୀ ସୁଭାଷ ବୋଷ

ପିଲାମାନେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନାମ ନିଶ୍ଚୟ ଜାଣିଥିବେ । ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ମହାନ ବିଜ୍ଞବ୍ୟକ୍ତି ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଶ୍ରୀ ଜବାହରଲାଲ ନେହେରୁଙ୍କୁ ମଧ୍ୟ ଜାଣିଥିବେ । ସେହିପରି ଭାରତ ମାତାର ଆଉ ଜଣେ ବୀର ସନ୍ତାନ ହେଲେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ଭାରତର ବିଶିଷ୍ଟ ମହାନ୍

ବ୍ୟକ୍ତିଙ୍କ ମଧ୍ୟରେ ସେ ତୃତୀୟ ସ୍ଥାନ ଅଧିକାର କରିଛନ୍ତି । ତାଙ୍କର ଜନ୍ମସ୍ଥାନ ଓଡ଼ିଶାର ପୁରାତନ ରାଜଧାନୀ ଓ ବୃହତ୍ତମ ସହର କଟକ ନଗରରେ । ତୁଳସୀ ଦୁଇପତ୍ରରୁ ବାସିଲାପରି ପିଲାଦିନରୁ ତାଙ୍କର ନାମ ମହକ ଉଠିଥିଲା । ଗାନ୍ଧିଜୀଙ୍କ ଅହିଂସା ନୀତିରେ ତାଙ୍କର ବିଶ୍ୱାସ ନଥିଲା । ତେଣୁ ବିନା ରକ୍ତପାତ ଓ ବିନା ଯୁଦ୍ଧରେ ଭାରତ ସ୍ୱାଧୀନତା ପାଇପାରିବ ନାହିଁ ବୋଲି ତାଙ୍କର ଧାରଣା ହୋଇଥିଲା । ତେଣୁ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ସେ ଅସ୍ତ୍ର ଧାରଣ କରିଥିଲେ ଏବଂ ଭାରତର ସ୍ୱାଧୀନତା ପ୍ରାପ୍ତିକୁ ତ୍ୱରାନ୍ୱିତ କରିଥିଲେ ।

ଦ୍ୱିତୀୟ ମହାସମର ସମୟରେ ଯେତେବେଳେ ଯୁଦ୍ଧର ବିଭୀଷିକା ସମଗ୍ର ପୃଥିବୀରେ ଭୟ ସଞ୍ଚାର କରୁଥିଲା ସେତେବେଳେ ସେ ନିଜର କଲିକତା ବାସଭବନରେ ନଜରବନ୍ଦୀରୂପେ କାଳାତିପାତ କରୁଥିଲେ । ସେ ସ୍ୱଭାବତଃ ବୀର, ତାଙ୍କର ମନ କେବେ ସ୍ଥିର ହୋଇପାରିବ ? ତେଣୁ ସେ ସୁଯୋଗ ଉଣ୍ଡୁଥିଲେ କିପରି ଭାରତରୁ ଚାଲିଯାଇ ବ୍ରିଟିଶ ସାମ୍ରାଜ୍ୟର ଶତ୍ରୁମାନଙ୍କସହ ମିଶି ଭାରତର ସ୍ୱାଧୀନତା ଆଣିବେ । ଏହିପରି ଅବସ୍ଥାରେ ସେ ବ୍ରିଟିଶ ସରକାର ଆଖିରେ ଧୂଳିଦେଇ ଗୁପ୍ତଭାବରେ ଭାରତରୁ ଚାଲିଯାଇ ପ୍ରଥମେ ଆଫଗାନିସ୍ଥାନ ପରେ ଇଟାଲି ଓ ଜର୍ମାନୀ ଦେଶରେ ପଦାର୍ପଣକଲେ । ଜର୍ମାନୀର ଶାସକ ଥିଲେ ମହା ପ୍ରତାପୀ ହିଟଲର୍ । ସେଠାରେ ଭାରତର ସ୍ୱାଧୀନତା ବିଷୟ ଉତ୍ଥାପନ କରି ତାଙ୍କ ସହାୟତାରେ ଜାପାନ ଦେଶକୁ ଚାଲିଗଲେ । ପୂର୍ବ ଏସିଆର ଭାରତୀୟମାନଙ୍କ ମଧ୍ୟରେ ସେ ନବଜାଗରଣ ସୃଷ୍ଟି କରିପାରିଥିଲେ । ଏତେବେଳକୁ ମିତ୍ରଶକ୍ତିମାନଙ୍କର ପ୍ରାଚ୍ୟ ଦେଶମାନଙ୍କରେ ପରାଭୂତର ପ୍ରଥମ ପର୍ଯ୍ୟାୟ ଆରମ୍ଭ ହୋଇଥାଏ । ଜାପାନ ଯୁଦ୍ଧରେ ଜୟଲାଭ କରି-ବାରେ ଆଗେଇ ଚାଲିଥାଏ । ଏହିପରି ସମୟକୁ ନେତାଜୀ ସୁବର୍ଣ୍ଣ ସୁଯୋଗ ମନେକରି ଜାପାନ ସହିତ ବନ୍ଧୁତା କରି ଗୋଟିଏ ନୂତନ ସରକାର 'ଅଜାଦ୍ ହିନ୍ଦ୍ ସରକାର' ଗଠନ କଲେ । ଏହି ଫଉଜ ବଳରେ ସେ ଭାରତର ଜନସାଧାରଣଙ୍କୁ ସିଙ୍ଗାପୁରରୁ ୧୯୪୩ ଅକ୍ଟୋବରରେ ଆହ୍ୱାନ ଦେଲେ, "ହେ ଭାରତର ବୀରପୁରୁଷଗଣ; ତୁମ୍ଭେମାନେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଆମର ଝଣ୍ଡାତଳେ ଏକଜୁଟ ହୋଇ ଭାରତମାତାର

ମୁକ୍ତିପାଇଁ ବୀରୋଚିତ ସଂଗ୍ରାମ କର । ନିଶ୍ଚୟ ଆମେ ସଂଗ୍ରାମରେ ଜୟଯୁକ୍ତ ହେବା । ସୁପ୍ରଭାତ ନିକଟେଇ ଆସୁଛି । ଚାଲ ଚାଲ ଆଗେଇ ଚାଲ । ସେହି ପୁରାତନ ଐତିହ୍ୟମଣ୍ଡିତ ମହାଭାରତର ରାଜଧାନୀ ଦିଲ୍ଲୀ ଆଡ଼କୁ ।" ଏହିପରି ନାନା ଉତ୍ସାହପୂର୍ଣ୍ଣ ଅମର ବାଣୀରେ ସେ ସେଠାର ଭାରତୀୟମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ସୁଭାଷ ବୋଷଙ୍କ ସଂଗଠିତ କାର୍ଯ୍ୟକଳାପରେ ବଙ୍ଗଳାର ଅନ୍ୟତମ ଦେଶପ୍ରେମୀ ଶ୍ରୀ ଦିଲ୍ଲୀପକୁମାର ରାୟ ଲେଖିଥିଲେ, 'ନେତାଜୀ ଭାରତୀୟ ସ୍ୱରାଜ୍ୟକୁ ନିକଟତର କରିଥିଲେ ।' ବିରାଟ ମତପାର୍ଥକ୍ୟ ସତ୍ତ୍ୱେ ଜାତି-ପିତା ମହାତ୍ମାଗାନ୍ଧୀ କହିଥିଲେ, 'ନେତାଜୀଙ୍କର ଦେଶ ପ୍ରେମର ପଟାନ୍ତର ନାହିଁ ।' ଯୁଗଜ୍ୟୋତି ଜବାହରଲାଲ କହିଥିଲେ, 'ସେ ହେଉଛନ୍ତି ଭାରତର ସାହସୀ ଓ ତେଜସ୍ୱୀ ସନ୍ତାନ ।' ବିଶିଷ୍ଟ ଦାର୍ଶନିକ ରାଷ୍ଟ୍ର-ପତିଙ୍କ ସର୍ବପଲ୍ଲୀ ରାଧାକୃଷ୍ଣନ କହିଥିଲେ, 'ସୁଭାଷ ବୋଷଙ୍କର ଦେଶପ୍ରୀତି ଥିଲା ଗଭୀର ।' ଶାନ୍ତିକାମୀ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୂର ଶାସ୍ତ୍ରୀ କହିଥିଲେ, 'ସେ ହେଉଛନ୍ତି ଦେଶର ଅମର ବିପ୍ଳବୀ ନେତା ।'

ଏହିପରି ସୁନାମଧନ୍ୟ ଯେଉଁ ମହାନ୍ ଦେଶପ୍ରେମୀ ଦୁର୍ଦ୍ଧର୍ଷ ବୀର ସନ୍ତାନ ଭାରତ ଭୂମିରେ ପୁଣି ପୁଣ୍ୟଭୂମି ଉତ୍କଳ ଦେଶରେ ଜନ୍ମ ଗ୍ରହଣ କରିଥିଲେ ତାଙ୍କର ନାମର କି ଆକର୍ଷଣ ଶକ୍ତି ଥିଲା ତାହା ନିମ୍ନ ବର୍ଣ୍ଣିତ ଗୋଟିଏ ଘଟଣାରୁ ସମ୍ୟକ୍ ରୂପେ ହୃଦଙ୍ଗମ କରିହେବ ।

ସେଦିନ ବର୍ମାର ରାଜଧାନୀ ରେଙ୍ଗୁନ ସହରରେ ଭାରତର ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । ଦରିଆ ପାରିର ହଜାର ହଜାର ଭାରତୀୟ ନରନାରୀ ସେହି ସଭାରେ ଯୋଗଦାନ କରିଥିଲେ । ସେତେବେଳକୁ ଆଜାଦ୍ ହିନ୍ଦ୍ ଫୌଜର କର୍ମକର୍ତ୍ତାମାନଙ୍କର ନାମ ଘୋଷିତ ହୋଇ ସାରିଥାଏ । ନେତାଜୀ ଥିଲେ ଆଜାଦ୍ ହିନ୍ଦ୍ ଫଉଜର ସର୍ବମୟ କର୍ତ୍ତା । ସେ ଉପସ୍ଥିତ ସଭାରେ ସ୍ୱୟଂ ବିଦ୍ୟମାନ । ନେତାଜୀ ସଭାରେ ଭାଷଣ ଦେଇ ସାରିଲା ପରେ ନିଜ ବେକର ଫୁଲମାଳଟିକୁ ନିଲାମ ଡାକିଲେ । ଯେଉଁ ଧନ ମିଳିବ ତାହା ଆଜାଦ୍ ହିନ୍ଦ୍ ପାଣ୍ଠିକୁ

ଯିବ । ତାଙ୍କର ଉଦ୍ଦୀପନାମୟ ଭାଷଣରେ କି ଐନ୍ଦ୍ରଜାଲିକ ଶକ୍ତିଥିଲା କେଜାଣି ପ୍ରଥମେ ଏକ ଲକ୍ଷ ଟଙ୍କାରେ ମାଳଟି ନିଲାମ ଡକାଗଲା । ଦେଖୁଁ ଦେଖୁଁ ସଭା ସ୍ଥଳରେ ଦେଶ ଭକ୍ତିର ପ୍ରବଳ ପରାକାଷ୍ଠା ଜଣା ପଡ଼ିଲା । ସାଙ୍ଗେ ସାଙ୍ଗେ ସଭା ମଧ୍ୟରୁ ୧୯ ଲକ୍ଷ ଟଙ୍କାର ଧ୍ୱନି ଶୁଣାଗଲା । ତା'ପରେ ବିଦ୍ୟୁତ୍ ବେଗରେ ବାରମ୍ବାର ଡାକ ଶୁଣାଗଲା । ୧୯ ଲକ୍ଷରୁ ୨ ଲକ୍ଷ, ୨ରୁ ୩, ୩ରୁ ୪, ୪ରୁ ୫ ଓ ତତ୍ପରେ ୭ ଲକ୍ଷ । କି ଅଦ୍ଭୁତ ଶକ୍ତି, କି ଅଦ୍ଭୁତ ଜାତୀୟତା । ଶେଷରେ ୭ ଲକ୍ଷ ଟଙ୍କାରେ ମାଳଟି ବିକ୍ରି ହୋଇଗଲା ।

ତୁମ୍ଭେମାନେ ଜାଣ, ଭାରତର ଉତ୍ତର-ପଶ୍ଚିମରେ ପଞ୍ଜାବ ବୋଲି ଗୋଟିଏ ରାଜ୍ୟ ଅଛି । ବର୍ତ୍ତମାନ ତାହା କେତୋଟି ଗ୍ଭୋଟ ଗ୍ଭୋଟ ପ୍ରଦେଶରେ ବିଭକ୍ତ ହୋଇଛି । ଭାରତର ଜାଗ୍ରତ ପ୍ରହରୀ ହେଉଛନ୍ତି ଏହି ପଞ୍ଜାବୀମାନେ । ପରାଧୀନ ଓ ସ୍ୱାଧୀନ ଭାରତର ସୈନ୍ୟବାହିନୀରେ ଏମାନଙ୍କ ସଂଖ୍ୟା ସବୁଠାରୁ ଅଧିକ । ସେମାନେ ଯେପରି ଦୁର୍ଦ୍ଧର୍ଷ ବୀର ସେହିପରି ଗମ୍ଭୀର ଦେଶପ୍ରେମୀ । ପ୍ରଥମେ ନିଲାମ ଡାକିଥିଲେ ଜଣେ ପଞ୍ଜାବୀ ଯୁବକ । ଯେତେବେଳେ ମାଳଟି ୭ ଲକ୍ଷ ଟଙ୍କାରେ ବିକ୍ରି ହୋଇଗଲା ସେତେବେଳେ ସେହି ପଞ୍ଜାବୀ ପାଗଳ ପ୍ରାୟ ହୋଇ କାନ୍ଦ କାନ୍ଦ ମୁହଁରେ ସଭାସ୍ଥ ମଞ୍ଚ ଉପରକୁ ଉଠି- ପଡ଼ିଲେ ଏବଂ ଉଚ୍ଚସ୍ୱରରେ କହି ପକାଇଲେ, "ମୋର ଯେତେକ ସମ୍ପତ୍ତି ଅଛି ସବୁତକ ନିଅ, ମୋତେ ସେ ମାଳଟି ଦିଅ ।" ନେତାଜୀଙ୍କ ମାଳପାଇଁ କି ବ୍ୟଗ୍ରତା !!

ସୁଭାଷ ପଞ୍ଜାବୀ ଯୁବକଙ୍କର ଏପରି ଦେଶପ୍ରେମ ଦେଖି ତାଙ୍କୁ କୁଣ୍ଢାଇ ପକାଇଲେ ଏବଂ କହିଲେ, "ଖାଲି ମାଳଟି ନେବ କ'ଣ ? ଆଜାଦ୍ ହିନ୍ଦ୍ ଫୌଜ ଯେଉଁ ବିଜୟ ମୁକୁଟ ପିନ୍ଧିବ ସେହି ମୁକୁଟର ଅଧିକାରୀ ଆପଣଙ୍କ ପରି ଦେଶପ୍ରେମୀ ।" ଏଥିରେ ଯୁବକ ଜଣକ ସନ୍ତୁଷ୍ଟ ହେଲେନି । ମାଳଟିକୁ ନେଇ ସେ ଆବେଗରେ ଗ୍ଭଟିରେ ଗ୍ଭପି- ଧରି କହିଲେ, "ମୋର ଯାହାସବୁ ଅଛି ସେ ସବୁ ଆଜାଦ୍ ହିନ୍ଦ୍ ଫୌଜକୁ ଦେଲି, ମୁଁ ଫୌଜର ଜଣେ ସିପାହୀ ହେବାକୁ ଗ୍ଭହେଁ, ଦେଶ ମାତୃକାର ସ୍ୱ ମୁକ୍ତିପାଇଁ ମୋ ଜୀବନକୁ ପଣ ରଖିଲି ।"

ସୁଭାଷଙ୍କ ପରି ବୀରପୁରୁଷ ଭାରତମାତା ଆଉ ପ୍ରସବ କରିବ କି ନାହିଁ କିଏ ଜାଣେ ? କିନ୍ତୁ ଦେଶ ପ୍ରେମର ମନ୍ତ୍ରରେ ସେ ଇଟାଲୀର ମୁକ୍ତିଦାତା ଗାରିବାଲ୍‌ଡିଙ୍କ ପରି ସ୍ୱଦେଶରେ ରହି ସମଗ୍ର ଭାରତବାସୀଙ୍କୁ ଉଦ୍‌ବୁଦ୍ଧ କରି ପାରିଥିଲେ । ଭାରତ ସ୍ୱଦେଶୀ କବଳରୁ ମୁକ୍ତ ହେବା ପର୍ଯ୍ୟନ୍ତ ସେ ଅବଶ୍ୟ ବଞ୍ଚି ପାରି ନଥିଲେ । ମାତ୍ର ତାଙ୍କର କାର୍ଯ୍ୟକଳାପ ଯେ ଭାରତ ସ୍ୱାଧୀନତାକୁ ତ୍ୱରାନ୍ୱିତ କରି ପାରିଥିଲା ଏଥିରେ କାହାରି ମତଦ୍ୱୈଧ ନାହିଁ । ଧନ୍ୟ ସୁଭାଷ, ଧନ୍ୟ ତୁମ୍ଭର ତେଜ, ବୀର୍ଯ୍ୟ, ଧନ୍ୟ ତୁମର ଦେଶ ପ୍ରୀତି । ଜନମ ମାଟି ଆପଣଙ୍କୁ କ'ଣ କେବେ ଭୁଲି ପାରିବ ?





## କରୁଣାମୟୀ ମା'
## ମଦର ଟେରେସା

ଆମେରିକା ଯୁକ୍ତରାଷ୍ଟ୍ରର ଶାନ୍ତିକାମୀ ରାଷ୍ଟ୍ରପତି ଜିମି କାର୍ଟରଙ୍କୁ ପଛରେ ପକାଇଦେଇ ମଦର ଟେରେସା ଯେତେବେଳେ ୧୯୭୯ ମସିହାର ନୋବେଲ ଶାନ୍ତି ପୁରସ୍କାର ଲାଭକଲେ ସେତେବେଳେ ସମଗ୍ର ବିଶ୍ୱରେ ଆନନ୍ଦର ଲହରୀ ଖେଳିଗଲା । ନିଃସ୍ୱାର୍ଥପର ସେବିକା ଟେରେସାଙ୍କୁ ଯେତେବେଳେ ଏହି ସମ୍ବାଦ ଦିଆଗଲା ସେତେବେଳେ ସେ ହଠାତ୍ କହି ପକାଇଲେ, "ଏହା ଦରିଦ୍ର, ଅସହାୟ, ପୀଡ଼ିତ ବ୍ୟକ୍ତିମାନଙ୍କର ବିଜୟଲାଭ ।" ଏହି ବିଶ୍ୱବିଖ୍ୟାତ ପୁରସ୍କାର ଲାଭ କରିବା ପୂର୍ବରୁ ସେ ଆଉ କେତେଗୁଡ଼ିଏ ଆନ୍ତର୍ଜାତିକ ପୁରସ୍କାର ଓ ଉପାଧିମାନ ଲାଭ କରି ସାରିଥିଲେ । ଆନ୍ତର୍ଜାତିକ ସଦ୍‌ଭାବ ହେତୁ

୧୯୬୨ ମସିହାରେ ସେ ଫିଲିପାଇନ୍‌ସର ସ୍ୱର୍ଗୀୟ ରାଷ୍ଟ୍ରପତିଙ୍କ ସ୍ମୃତି ଉପଲକ୍ଷ୍ୟେ ମାଗ୍‌ସେସେ ପୁରସ୍କାର ପାଇବା ପୂର୍ବରୁ ଭାରତର ରାଷ୍ଟ୍ରପତିଙ୍କଠାରୁ ପଦ୍ମଶ୍ରୀ ଉପାଧି ପାଇଥିଲେ । ଏହି ବର୍ଷ ସେ ବାହାର ଦୁନିଆର ଦୃଷ୍ଟିକୁ ଆସିଲେ । ୧୯୭୧ ମସିହାରେ ସେ ପୋପ୍ ଜନ୍ ଶାନ୍ତି ପୁରସ୍କାର ଲାଭକଲେ । ସେହି ବର୍ଷ ମଧ୍ୟ ମହାନ୍ ରାଷ୍ଟ୍ରପତି ଜନ୍ ଫିଜରାଲ୍‌ଡ଼ କେନେଡ଼ି ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ ଆମେରିକାରୁ ମହାନ୍ ସେବିକା ହିସାବରେ ଡକ୍ଟରେଟ ଉପାଧି ପାଇଥିଲେ । ପରେ ପରେ ୧୯୭୨ ମସିହାରେ ନେହେରୁ ଶାନ୍ତି ପୁରସ୍କାର ଲାଭ କରିଥିଲେ ଏବଂ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ତାଙ୍କୁ ଭାରତର ଶ୍ରେଷ୍ଠ ସମ୍ମାନ 'ଦେଶୀକୋତ୍ତମ' ଉପାଧିରେ ଭୂଷିତ କଲେ । ମାତ୍ର ୧୯୭୯ରେ ସେ ଯେଉଁ ପୁରସ୍କାର ଲାଭକଲେ ତାହାର ମୂଲ୍ୟ ବହୁତ ବେଶୀ । ଭାରତୀୟ ମୁଦ୍ରାରେ ତା'ର ମୂଲ୍ୟ ପ୍ରାୟ ୧୬ ଲକ୍ଷ ଟଙ୍କା । ଏହାଦ୍ୱାରା ତାଙ୍କର ନିଃସ୍ୱାର୍ଥପର ଜନସେବା ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତି ଲାଭ କଲା ଏବଂ ସେ ସମଗ୍ର ବିଶ୍ୱରେ ଜଣେ ମହାନ୍ ଗଣ୍ୟମାନ୍ୟା ମହିଳା ରୂପେ ବିଦିତ ହେଲେ । ଏହି ମହୀୟସୀ ମହିଳା କିଏ ଓ କାହିଁକି ତାହାଙ୍କୁ ବହୁ ସମ୍ମାନର ଅଧିକାରୀ କରାଯାଇଛି ?

ଇଉରୋପ ମହାଦେଶର ଆଲ୍‌ବାନିଆ ନାମକ ଏକ କ୍ଷୁଦ୍ରରାଜ୍ୟ ତାଙ୍କର ପିତୃଭୂମି । ପିତା ତାଙ୍କର ଜଣେ କ୍ଷୁଦ୍ର ବ୍ୟବସାୟୀ । ସେ ଯୁଗୋସ୍ଲୋଭିଆ ରାଜ୍ୟର ସ୍କୋପେଜ ସହରରେ ଏକ କ୍ଷୁଦ୍ର ଦୋକାନ ଖୋଲି ନିଜର ଗୁଜୁରାଣ ମେଣ୍ଟାଉଥିଲେ । ଏହି ସହରରେ ୧୯୧୦ ମସିହା ଅଗଷ୍ଟ ୨୭ ତାରିଖରେ ମଦର ଟେରେସାଙ୍କ ଜନ୍ମ । ତାଙ୍କର ପିଲାଦିନର ନାମଥିଲା ଏଗ୍‌ନସ ଗନକ୍ସ ବୋଜାକ ହିଉ । ଏହି ନାମଟି ୨୧ ବର୍ଷ ପର୍ଯ୍ୟନ୍ତ ରହିଥିଲା । ୧୯୩୧ ମସିହାରେ ସେ ଟେରେସା ନାମ ଧାରଣ କରିଥିଲେ । ପିଲାଦିନେ ଯେତେବେଳେ ତାଙ୍କର ହିତାହିତ ଜ୍ଞାନର ଉଦ୍ରେକ ହେଲା ସେତେବେଳେ ଅର୍ଥାତ୍ କୈଶୋର ଅବସ୍ଥାରେ ତାଙ୍କର ଅନ୍ତର ମଧ୍ୟରୁ ଏକ ବାଣୀ ସେ ଶୁଣିପାରିଲେ, "ଦୀନ ଦୁଃଖୀମାନଙ୍କ ସେବା ଅର୍ଥ ପରମେଶ୍ୱରଙ୍କ ସେବା କରିବା ।"

ଭଗବାନ ବୁଦ୍ଧ ପିଲାଦିନେ ଯେପରି ନିଃସଙ୍ଗତା ଅନୁଭବ କରୁଥିଲେ ଏବଂ ଦୁନିଆର ଦୁଃଖବିଷୟରେ ଚିନ୍ତା କରୁଥିଲେ, ମଦର ଟେରେସା ସେହିପରି ଅସହାୟ, ପୀଡ଼ିତ, ନିରାଶ୍ରୟ ଶିଶୁ ଓ ରୁଗ୍‌ଣମାନଙ୍କ କଥା ସର୍ବଦା ଭାବୁଥିଲେ । ଭାବନା ଏତେ ଗଭୀର ହେଉଥିଲା ଯେ ସେ ଆଦୌ ସୁଖ ଅନୁଭବ କରିପାରୁ ନଥିଲେ । ତେଣୁ ଏହି ୧୨ ବର୍ଷର କନ୍ୟା ମୁଣ୍ଡରେ ସତେ କି ବିଶ୍ବର ବେଦନା ଲଦି ଦିଆଯାଇଥିଲା । କି ଅଦ୍ଭୁତ ଜନପ୍ରୀତି ଓ ଈଶ୍ବର ପ୍ରୀତି !!

ପୁଅ ହେଉ ବା ଝିଅ ହେଉ, ବଡ଼ହେଲେ ନିଜର ସଂସାର ଚିନ୍ତା କରିବାରେ ଲାଗିପଡ଼ନ୍ତି । ମାତ୍ର ଗଭୀର ହୃଦୟା, ପର ଦୁଃଖ କାତର ଟେରେସା ଅନ୍ୟ ଉପାଦାନରେ ଗଢ଼ା ହୋଇଛନ୍ତି । ସାଂସାରିକ ବାସନା, କାମନା ତାଙ୍କୁ ଆକୃଷ୍ଟ କରିବ କାହିଁକି ? ସେ ଜନ୍ମରୁ ପରମା ସେବିକା ଓ ବିଶ୍ବବନ୍ଦନୀୟା । ଯେତେବେଳେ ତାଙ୍କୁ ୧୮ ବର୍ଷ ବୟସ ସେତେବେଳେ ସେ ଭାରତୀୟ ଖ୍ରୀଷ୍ଟୀୟାନ ପାଦ୍ରୀମାନଙ୍କଠାରୁ ପତ୍ର ପାଇ ସୁଦୁର କଲିକତା ସହରକୁ ଚାଲି ଆସିଥିଲେ । ଦୀନ ଦୁଃଖୀମାନଙ୍କର କଷ୍ଟମୟ ଜୀବନ ଦେଖି ଦେଖି ସେ କାନ୍ଦୁଥିଲେ । ବହୁସମୟରେ ତାଙ୍କ ଅନ୍ତର ଭିତରୁ ଦୀନ ଦୁଃଖୀର ସେବା କରିବାପାଇଁ ଆହ୍ବାନ ଆସୁଥିଲା । ସେ ଯେ ଦିନେ କୋଟି ହୃଦୟର ମା ହେବେ, ପିଲାଦିନର ହାବଭାବରୁ ଜଣା ପଡ଼ୁଥିଲା । ତେଣୁ ୧୮ ବର୍ଷ ବୟସରେ ଏକ ସନ୍ନ୍ୟାସିନୀ ହିସାବରେ ସେ କଲିକତା ସହରକୁ ଚାଲିଆସିଲେ । ସେଠାରେ ସେଣ୍ଟମେରୀ ହାଇସ୍କୁଲରେ ସେ ଧନୀ ସାମନ୍ତମାନଙ୍କର ଭୂଗୋଳ ଶିକ୍ଷୟିତ୍ରୀଭାବେ କାଳ କାଟିବାକୁ ଲାଗିଲେ । କଲିକତା ହେଉଛି ଏପରି ଗୋଟିଏ ନଗରୀ ଯେଉଁଠାରେ ୩ ଲକ୍ଷ ଲୋକ ରାସ୍ତାକଡ଼ରେ, ମୁକ୍ତ ଆକାଶ ତଳେ, ଶୀତ କାକର ଖରା ସହି ଜୀବନ କଟାନ୍ତି । ସେମାନଙ୍କର ଚୁଲି ନାହିଁ କି ଚାଳ-ନାହିଁ । ସେମାନଙ୍କର ଦୁଃଖର ସୀମା ନଥାଏ । ଭଗବାନଙ୍କ ଉପରୁ ସେମାନଙ୍କର ଭରଷା ତୁଟି ଯାଇଥାଏ । ସେମାନଙ୍କ କଥା ବୁଝିବାକୁ କିଏ ଅଛି ? ସେମାନଙ୍କ ମୁଖରେ ହସ ଫୁଟାଇବ କିଏ ? ଏହିପରି ସମୟରେ ଟେରେସାଙ୍କ କଲିକତାକୁ ଆଗମନ । ଶିକ୍ଷୟିତ୍ରୀ ହିସାବରେ

ସେ ଗୋଟିଏ କ୍ଷୁଦ୍ର ପରିସର ମଧ୍ୟରେ ଆରାମରେ ଜୀବନ କାଟୁଥିଲେ ମାତ୍ର ନିପେଷିତମାନଙ୍କ କଥା ସର୍ବଦା ଚିନ୍ତା କରୁଥିଲେ । ତେଣୁ ତାଙ୍କ ଅନ୍ତର ଭିତରୁ ଗୋଟିଏ ବାଣୀ ଶୁଣାଗଲା—

"ଦୁନିଆରେ ଏତେ ଦୁଃଖ, ଦାରିଦ୍ର୍ୟ ରହିଛି ଅଥଚ ତୁ ଏହି ସ୍କୁଲଟି ଭିତରେ ଚିରଦିନ ପଡ଼ିରହିଛୁ, ତୋର ଆଗେଇ ଆସିବା ଉଚିତ ।"

ମଦର ଟେରେସାଙ୍କ ପରିଧେୟ ବସ୍ତ୍ର ଅତି ସାଧାରଣ । ବେଶଭୂଷା ଆଦୌ ନାହିଁ । ଖଣ୍ଡିଏ ନୀଳଧଡ଼ିଆ ଧଳା ଅଠର ଟଙ୍କିଆ ଶାଢ଼ୀ ହିଁ ତାଙ୍କର ସର୍ବସ୍ୱ । କଲିକତାର ସବୁଠାରୁ ଅସ୍ୱାସ୍ଥ୍ୟକର ଆବର୍ଜନାମୟ ଅଞ୍ଚଳ ହେଉଛି ମୋତିଝିଲ ଅଞ୍ଚଳ । ଏହି ବସ୍ତିରେ ସେ କାମ କରିବାକୁ ପସନ୍ଦ କଲେ । ଦିନେ ସେହି ମୋତିଝିଲ ଅଞ୍ଚଳରେ ବୁଲୁ ବୁଲୁ ବହୁ ଦରିଦ୍ର ଅସହାୟଙ୍କ ଦୁଃଖ ଦେଖି ଆଖିରୁ ଲୁହ ଗଡ଼ାଇ ପକାଇଲେ । ସେ ଅନ୍ତର ଭିତରୁ ଶୁଣିପାରିଲେ, "ମୁଁ ଏହି ବସ୍ତି ଭିତରେ ଅଛି ।" ଟେରେସା ସେ ଦିନଟିଯାକ ଭାବି ଭାବି ଅସ୍ତବ୍ୟସ୍ତ ହୋଇ ପଡ଼ିଲେ । ସେଦିନ ସେ ସ୍କୁଲକୁ ଗଲେନାହିଁ । ତାଙ୍କ ହୃଦୟର ବେଦନା ବଢ଼ିବାରେ ଲାଗିଲା । ସେ ଦିନଟି ହେଉଛି ୧୯୪୬ ମସିହା ଡିସେମ୍ବର ୧୦ ତାରିଖ । ସେତେବେଳକୁ ଭାରତ ସ୍ୱାଧୀନତା ପାଇ ସାରିଲାଣି । ଦେଶର ରାଜନୀତିକ ଜୀବନରେ ଏକ ନୂଆ ଯୁଗ ସୃଷ୍ଟି ହୋଇଥାଏ । ଦେଶ ଯିନା ସ୍ୱାଧୀନତା ପାଇଲା ଭାରତ ଭାଗ ଭାଗ ହେବାରୁ ପାକିସ୍ଥାନରୁ ଲକ୍ଷ ଲକ୍ଷ ହିନ୍ଦୁ ଆଶ୍ରୟ ପ୍ରାର୍ଥୀ ପଶ୍ଚିମବଙ୍ଗକୁ ପଳାଇ ଆସିଲେ । କଲିକତା ସହର ସେମାନଙ୍କ ଆର୍ତ୍ତନାଦରେ କମ୍ପି ଉଠିଲା । ସେହି ସମୟରେ ମଦର ଟେରେସାଙ୍କ ଜୀବନର ଗତିପଥ ବଦଳିବାକୁ ଲାଗିଲା । ସେ ଶିକ୍ଷୟିତ୍ରୀ କାମ ଛାଡ଼ି କଲିକତା ନଗରୀର ଲକ୍ଷ ଲକ୍ଷ ଅବହେଳିତ, ରୁଗ୍ଣ, ଅସହାୟ ନର-ନାରୀଙ୍କ ସେବାରେ ମନପ୍ରାଣ ଢାଳିଦେଲେ । ୧୯୪୮ ମସିହାରେ ଟେରେସା ଭାରତୀୟ ନାଗରିକତ୍ୱ ଗ୍ରହଣ କଲେ । ୧୯୫୦ ମସିହାରେ ଖ୍ରୀଷ୍ଟୀୟାନ ଜଗତର ଧର୍ମଗୁରୁ ମହାମାନ୍ୟ ପୋପ୍‌ଙ୍କର ଅନୁମତି ନେଇ 'ମିସନାରିଜ ଅଫ୍ ଚ୍ୟାରିଟିଜ' ନାମରେ ଏକ ନୂତନ ସେବାସଂସ୍ଥା ଗଠନ

କଲେ । ଏହି ସଂସ୍ଥା ଯେ କେବଳ ଭାରତରେ ସେବାକାର୍ଯ୍ୟ ସମ୍ପ୍ରଦାନ କରୁଅଛି ତାହା ନୁହେଁ ଏହା ସମଗ୍ର ବିଶ୍ୱରେ କୋଟି କୋଟି ନିରନ୍ନ, ନିଃସ୍ୱ, ଦୀନ ହୀନଙ୍କ ସେବାରେ ବ୍ରତୀ ରହିଛି । ତାଙ୍କ ସେବାରେ ଅନୁପ୍ରାଣିତ ହୋଇ ପୃଥିବୀରେ ବିଭିନ୍ନ ଅଞ୍ଚଳରୁ ସ୍ୱେଚ୍ଛାସେବୀଗଣ ଆସି ତାଙ୍କ ସଙ୍ଗେ ଯୋଗ ଦେଇଛନ୍ତି । ଏହି ସଂସ୍ଥା ସମଗ୍ର ପୃଥିବୀ ବ୍ୟାପୀ ତାର କାର୍ଯ୍ୟ ବିସ୍ତାର କରିଅଛି । କେନିଆ, ଭେଞ୍ଜୁଲି, କଲମ୍ବୋ, ଇଟାଲି, ଶ୍ରୀଲଙ୍କା, ତାଞ୍ଜାନିଆ, ଯେମେନ, ଜୋର୍ଡାନ, ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, ଅଷ୍ଟ୍ରେଲିଆ ପ୍ରଭୃତି ୨୦ଟି ରାଜ୍ୟରେ ଏହି ଅନୁଷ୍ଠାନ ବିପୁଳ ସେବାକାର୍ଯ୍ୟ କରି ଆସୁଅଛି । ଦିନକୁ ଦିନ ଏହାର ପରିସର ବୃଦ୍ଧି ପାଇବାରେ ଲାଗିଛି । ଭାରତବର୍ଷରେ ୮୬ଟି, ବିଦେଶରେ ୪୭ଟି ଅନାଥାଶ୍ରମ, ୨୧୩ଟି ଦାତବ୍ୟ ଚିକିତ୍ସାଳୟ, ୫୪ଟି କୁଷ୍ଠାଶ୍ରମ ଓ ୬୦ଟି ଅବୈତନିକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ପାରିଛି । କେବଳ କଲିକତା ନଗରୀରେ ୬୦ଟି ସେବାସଂସ୍ଥା ନିର୍ମାଣକରି ସେଥିରେ ୬୦୦ ସେବିକା ରଖାଯାଇ ପାରିଛନ୍ତି । ମଦର ଟେରେସାଙ୍କ ନାମ କଲିକତାର ଘରେ ଘରେ ସୁପରିଚିତ । କଲିକତାର କାଳୀ ମନ୍ଦିର ନିକଟରେ ଟେରେସାଙ୍କ 'ନିର୍ମଳ ହୃଦୟ କେନ୍ଦ୍ର'ରେ ୧୧୦ଟି ଶଯ୍ୟାବିଶିଷ୍ଟ ଏକ ଚିକିତ୍ସାଳୟର ବ୍ୟବସ୍ଥା ହୋଇ ପାରିଅଛି । ସେଠାରେ ଡାକ୍ତର ଓ ଶିକ୍ଷିତା ଧାଈମାନେ ସେବା ଶୁଶ୍ରୂଷା କାର୍ଯ୍ୟ ଦେଖନ୍ତି । ମଦର ଟେରେସାଙ୍କ ଏହି ମହତ୍ କାର୍ଯ୍ୟକୁ ଆଗେଇ ନେବା ପାଇଁ ବଙ୍ଗଳାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଧାନ ରାୟଙ୍କ ସାହାଯ୍ୟ ସହଯୋଗ ଉଲ୍ଲେଖଯୋଗ୍ୟ । ମଦର ଟେରେସା ଭାରତୀୟ ଢଙ୍ଗରେ ତାଙ୍କର ଦୈନନ୍ଦିନ ଜୀବନ ଅତିବାହିତ କରନ୍ତି ।

ତାଙ୍କ ମତରେ "ସମସ୍ତେ ଈଶ୍ୱରଙ୍କ ସନ୍ତାନ, ଆମେ ସମସ୍ତେ ଭାଇ ଭଉଣୀ ସ୍ନେହ ପ୍ରୀତିରେ ବାନ୍ଧିହେବା ଆବଶ୍ୟକ । ଈଶ୍ୱର ବିଶ୍ୱର ସୃଷ୍ଟିକର୍ତ୍ତା, ବିଶ୍ୱ ନିୟନ୍ତା ମଧ୍ୟ, ତେଣୁ ଆମେ ଯେଉଁ କାର୍ଯ୍ୟ କରୁଥାଇଁ ତାହା ତାଙ୍କର କାର୍ଯ୍ୟ । ଈଶ୍ୱରଙ୍କ ଇଚ୍ଛା ଅନୁଯାୟୀ କାର୍ଯ୍ୟ କରିବା ଏକାନ୍ତ ଆବଶ୍ୟକ । ଈଶ୍ୱରଙ୍କ ଦର୍ଶନ ପାଇବା ସହଜ

ବ୍ୟାପାର ନୁହେଁ; ତେଣୁ ତାଙ୍କର ଅନବଦ୍ୟ ସୃଷ୍ଟି ଏହି ମାନବ ସେବାହିଁ ଈଶ୍ୱର ସେବା ।”

ସେ ପ୍ରଥମେ ୫ ଜଣ ବୁଲ୍ କୁଷ୍ଠ ରୋଗୀଙ୍କୁ ନେଇ ୧୯୫୭ ମସିହାରେ ଏକ କୁଷ୍ଠାଶ୍ରମ କଲିକତାରେ ସ୍ଥାପନ କରିଥିଲେ । ଏବେ ଆସାନସୋଲ ନିକଟରେ ଶାନ୍ତିନଗର ନାମକ ଏକ ନଗର କୁଷ୍ଠ ରୋଗୀମାନଙ୍କ ପାଇଁ ନିର୍ମାଣ କରାଯାଇଛି ।

ବଙ୍ଗଳାଦେଶ ଯୁଦ୍ଧ ପରେ ଭାରତକୁ ବହୁ ଆଶ୍ରୟପ୍ରାର୍ଥୀ ପଳାଇ ଆସୁଥିଲେ । ସେମାନଙ୍କ ଅବସ୍ଥା ସ୍ୱଚକ୍ଷୁରେ ଦେଖି ଯିବାପାଇଁ ଯୁକ୍ତରାଷ୍ଟ୍ର ଆମେରିକାର ସିନେଟର ପୂର୍ବତନ ରାଷ୍ଟ୍ରପତି ଜନ୍ କେନେଡ଼ିଙ୍କର କନିଷ୍ଠଭ୍ରାତା ଏଡ୍‌ୱାର୍ଡ଼ କେନେଡ଼ି କଲିକତା ଆଗମନ କରିଥିଲେ । ସେତେବେଳେ ମଦର ଟେରେସାଙ୍କ ଅଦ୍ଭୁତ ମାନବ ସେବା ପ୍ରୀତି ସେ ଅନୁଭବ କରିଥିଲେ । ତେଣୁ ୧୯୭୫ ମସିହାର ନୋବେଲ୍ ଶାନ୍ତି ପୁରସ୍କାର ପାଇବା ପାଇଁ ସେ ମଦର ଟେରେସାଙ୍କ ନାମ ସୁପାରିସ୍ କରିଥିଲେ । ମାତ୍ର ସେ ସମୟରେ ଆସ୍ଲୋ କର୍ତ୍ତୃପକ୍ଷ ଶାନ୍ତି ପୁରସ୍କାର ପ୍ରଦାନ ରାଜନୀତିକ ଦୃଷ୍ଟିକୋଣରୁ ବିଚାର କରୁଥିଲେ । ତେଣୁ ସେ ବର୍ଷ ମଦର ଟେରେସା ସେଥିରୁ ବଞ୍ଚିତ ହୋଇଥିଲେ । ତାର ୪ ବର୍ଷ ପରେ ୧୯୭୯ରେ ଯେତେବେଳେ ତାଙ୍କର ନାମ ଘୋଷିତ ହେଲା ସେତେବେଳେ ସମସ୍ତ ବିଶ୍ୱ ଆନନ୍ଦ ମୁଖରିତ ହୋଇ ଉଠିଲା । ମଦର ଟେରେସା ଏ ସମ୍ବାଦ ପାଇ ଭଗବାନଙ୍କର ଅଶେଷ କରୁଣା ବୋଲି ଉଚ୍ଚାରଣ କଲେ । ମିଶନାରିଜ ଅଫ୍ ଚ୍ୟାରିଟିଜ୍‌ର ସେବିକାମାନେ ମଧ୍ୟାହ୍ନ ଭୋଜନ ଟେବୁଲ୍ ଗୁଡ଼ି ମା'ଙ୍କ ନିକଟକୁ ଯାଇ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ନାଚି ଉଠିଲେ ।

ଯେତେବେଳେ ଏ ସମ୍ବାଦ ଚିକିତ୍ସା କେନ୍ଦ୍ରରେ ପ୍ରଚାରିତ ହେଲା ସେତେବେଳେ କୃଷ୍ଣବାହାଦୁର ନାମକ ଏକ ନେପାଳୀ ରୋଗୀ କହି-ଉଠିଲା, “ସେ ହେଉଛନ୍ତି ସାକ୍ଷାତ ଈଶ୍ୱରୀ, ତେଣୁ ଏ ପୁରସ୍କାର ଲାଭ କରିବା ପାଇଁ ଯୋଗ୍ୟା ।” ମଦର ଟେରେସାଙ୍କ ମତରେ, ଦାରିଦ୍ର୍ୟ

ମନୁଷ୍ୟର ସୃଷ୍ଟି, ମନୁଷ୍ୟ ମନରୁ ଲୋଭ ଦୂରୀଭୂତ ନ ହେଲେ ଦାରିଦ୍ର୍ୟ ଦୂରୀଭୂତ ହେବନାହିଁ ।” ଯେତେବେଳେ ତାଙ୍କୁ ପ୍ରଶ୍ନ କରାଗଲା ଏହି ବିପୁଳ ସମ୍ପଦର ଖର୍ଚ୍ଚ କପରି କରାଯିବ, ସେତେବେଳେ ସେ କହିଲେ, “ଏହା ଦରିଦ୍ର, ଅସହାୟ, ପୀଡ଼ିତମାନଙ୍କ ପାଇଁ ବ୍ୟୟ କରାଯିବ । ଏହା ପରମେଶ୍ୱରଙ୍କ ଦାନ । ଏହା ତାଙ୍କ ପିଲାମାନଙ୍କ ପାଇଁ ଖର୍ଚ୍ଚ କରାଯିବ; କିନ୍ତୁ ସର୍ବପ୍ରଥମେ କୁଷ୍ଠ ରୋଗୀମାନଙ୍କ ମଙ୍ଗଳ ପାଇଁ ଖର୍ଚ୍ଚ କରାଯିବ ।”

ଧନ୍ୟ ମଦର ଟେରେସା ! ଧନ୍ୟ ତୁମର ମାନବ ପ୍ରୀତି । ତୁମେ ଗୋଟିଏ ଦେଶର ସମ୍ପଦ ନୁହଁ, ତୁମେ ସମଗ୍ର ବିଶ୍ୱର କୋଟି ହୃଦୟର ମା । ୭୯ ବର୍ଷ ବୟସରେ ତୁମଠାରେ କି ଅଦ୍ଭୁତ ଶକ୍ତି । ତୁମେ ଆହୁରି ବହୁବର୍ଷ ବଞ୍ଚିରହି ପଥହରା ମାନବ ସମାଜକୁ ପଥ ଦେଖାଅ ।

---



## ବୀରଭୋଗ୍ୟା ବସୁନ୍ଧରାର ନିର୍ଭିକ ବୀର
## ବୀର ସଭର୍‌କର୍‌

ସେତେବେଳେ ବମ୍ବେ ସହରରେ ର୍‌ୟାଣ୍ଡ୍ ସାହେବ ନାମକ ଜଣେ ଇଂରେଜ କମିଶନର ଥିଲେ । ସେ ବଡ଼ ଅତ୍ୟାଚାରୀ ଓ ଭାରତୀୟମାନଙ୍କୁ ହୀନ ଚକ୍ଷୁରେ ଦେଖୁଥିଲେ । ତାଙ୍କ ଆଦେଶରେ ପୁଲିସ ଗୁଳିରେ ଅସଂଖ୍ୟ ଭାରତୀୟ ନିହତ ହୋଇଥିଲେ । ତାଙ୍କୁ ମାରିବା ପାଇଁ କେତେକ ସାହସୀ ଭାରତୀୟ ଯୁବକ ସମସ୍ତେ ଉଣ୍ଡୁଥିଲେ । ଚାପେକର ଭାତୃଦ୍ୱୟ ସେଦିନ ର୍‌ୟାଣ୍ଡ୍ ସାହେବଙ୍କୁ ହତ୍ୟାକଲେ ଏବଂ ଫାଶୀଖୁଣ୍ଟରେ ଝୁଲିଲେ ।

୧୯୮୭ ମସିହା ଜୁନ୍ ମାସ । ସେତେବେଳକୁ ଟୋକାଟାକୁ ମାତ୍ର ଚଉଦ ବର୍ଷ । ବାଲ୍ୟକାଳରୁ ତା'ର ଦେଶପ୍ରୀତି ଥିଲା ଅସୀମ । ଚାପେକର ଭାଇମାନଙ୍କ ଫାଶୀ ପାଇବାରେ ସେ ଭୀଷଣ ମର୍ମାହତ ହୋଇପଡ଼ିଲା । ସେ ନିଜ ଇଷ୍ଟଦେବୀ ଦୁର୍ଗାଙ୍କ ନିକଟରେ ଶପଥ କଲା ମାତୃଭୂମିକୁ ମୁକ୍ତ କରିବା ପାଇଁ ସେ ତା'ର ଜୀବନ ଦାନ କରିବ । ପିଲାଟିର ଲଢ଼ୁଆ ମନୋଭାବ ଦେଖି ଗାଁ ଗଣ୍ଡାର ଲୋକେ ଆଚମ୍ବିତ ହେଉଥିଲେ ଓ କେତେବେଳେ କ'ଣ ଘଟିଯିବ ସେଥିପାଇଁ ଭୟ ବି କରୁଥିଲେ । ହାଇସ୍କୁଲରେ ପଢ଼ିବା ସମୟରେ ପିଲାଟି 'ମିତ୍ରମେଳା' ନାମକ ଏକ ଦଳ ଗଢ଼ିଲା । ବହୁ ସାଙ୍ଗ ସାଥୀ ତା'ର ସେ ଦଳରେ ଯୋଗଦେଲେ । ହାଇସ୍କୁଲ୍ ପଢ଼ା ଶେଷ ହେଲା । ପୁନାରେ ଫର୍ଗୁସନ କଲେଜରେ ନାଁ ଲେଖା ହେଲା । କଲେଜର ପରିସରରେ ସେ ଅଧିକ କାମକରିବାକୁ ଫୁରୁସତ ପାଇଲେ । ପରବର୍ଷ ୧୯୦୪ ମସିହାରେ ସେ 'ଅଭିନବ ଭାରତ' ନାମକ ଏକ ନୂଆ ସଂସ୍ଥା ଗଢ଼ିଲେ । ମୁଖ୍ୟ ଉଦ୍ଦେଶ୍ୟ ହେଲା ବ୍ରିଟିଶ ଅତ୍ୟାଚାରରୁ ଦେଶକୁ ମୁକୁଳେଇବା । ଯେଉଁ ବ୍ରିଟିଶ ସାମ୍ରାଜ୍ୟ ଏତେ ବିରାଟ ଯେ ଏଥିରେ ସୂର୍ଯ୍ୟଅସ୍ତ ଯାଆନ୍ତି ନାହିଁ ବୋଲି କୁହାଯାଏ ସେହି ବ୍ରିଟିଶଶାସନକୁ ଏ ଦେଶରୁ ହଟାଇବା କ'ଣ ସହଜ କଥା ?

ଯୁବକଙ୍କୁ ଏକ ମଉକା ମିଳିଗଲା । ୧୯୦୫ ମସିହାରେ ବଙ୍ଗଭଙ୍ଗ ଆନ୍ଦୋଳନ ଆରମ୍ଭ ହୋଇଗଲା । ସେ ତ ସେଥିରେ ମାତିଗଲେ ସାଙ୍ଗସାଥୀଙ୍କୁ ଏକଜୁଟ କରିପକାଇଲେ । ପ୍ରତିବାଦସ୍ୱରୂପ ପୁନାର ଗୋଟିଏ ଛକ ଜାଗାରେ ବିଦେଶୀ ବସ୍ତ୍ରଗୁଡ଼ାଏ ଗଦାକରି ନିଆଁ ଲଗାଇ ଦେଲେ । ସେତେବେଳେ ଲୋକଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ସେତେ ହୋଇନଥାଏ । ସମସ୍ତେ ତଟସ୍ଥ ହୋଇଗଲେ । ସହର ତମାମ ହୁଲସ୍ଥୁଲ । ବ୍ରିଟିଶ ସରକାରକୁ ଗଭୀର ଅପମାନ । ଗୋରା ପ୍ରିନ୍ସିପାଲ ରାଗରେ ଗର ଗର । ଯୁବକକୁ ୧୦ଟଙ୍କା ଜୋରିମାନା । ଯୁବକଙ୍କୁ ଗୋରା ପ୍ରିନ୍ସିପାଲ କଲେଜରୁ ବହିଷ୍କାର କରିଦେଲେ । ଯୁବକ କ'ଣ ହାର ମାନିବ ? ତା'ର ମନ୍ତ୍ର ଥିଲା ଅଭୟ ।

୧୯୦୬ ମସିହାରେ ବାଇଶ ବର୍ଷ ବୟସରେ ତତ୍‌କାଳୀନ ଭାରତର ଅପ୍ରତିଦ୍ୱନ୍ଦ୍ୱୀ ନେତା ଲୋକମାନ୍ୟ ତିଳକ ଓ ଶ୍ୟାମାକୃଷ୍ଣ ବର୍ମାଙ୍କ ସହାୟତାରେ ଆଇନଶାସ୍ତ୍ର ଅଧ୍ୟୟନ କରିବା ପାଇଁ ସେ ଇଂଲଣ୍ଡ ଯାତ୍ରାକଲେ । ସେ ତ ଆଜନ୍ମ ବିପ୍ଳବୀ । ବ୍ରିଟିଶ ସରକାରଙ୍କୁ ଏଦେଶରୁ ହଟାଇ ପୂର୍ଣ୍ଣସ୍ୱରାଜ ପ୍ରତିଷ୍ଠା କରିବା ଥିଲା ତାଙ୍କର ଅସଲ ଲକ୍ଷ୍ୟ । ସେ ଯେଉଁଠାରେ ରହିଲେ ମଧ୍ୟ ଦେଶ କଥା ଚିନ୍ତାକରିବା ତାଙ୍କର ପ୍ରଥମ-କାର୍ଯ୍ୟ ଥିଲା । ତେଣୁ ବ୍ରିଟିଶ ସିଂହର ଗୁହାରେ ବାସକରି ମଧ୍ୟ ତା' ବିରୁଦ୍ଧରେ ଲଢ଼ାଇ କରିବାରେ ସେ ତିଳେ ମାତ୍ର ଦ୍ୱିଧା କରି ନ ଥିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନ ଚଳାଇବା ପାଇଁ ସେ ଲାଗିପଡ଼ିଲେ । ବାରିଷ୍ଟରି ପଢ଼ିବାକୁ ଆସିଥିବା ଭି. ଭି. ଏସ୍. ଅୟାର ତାଙ୍କର ମୁଖ୍ୟ ସହଯୋଗୀ ଥିଲେ । ଅଭିନବ ଭାରତ ସଂସ୍ଥା ଇଣ୍ଡିଆ ହାଉସ୍‌ରେ ପରିଚାଳିତ ହେଉଥିଲା । ଏହିଠାରେ ଭାରତୀୟ ବିପ୍ଳବୀଙ୍କୁ ବୋମା ତିଆରିରେ ତାଲିମ ଦିଆଯାଉଥିଲା । ଗୁପ୍ତଭାବରେ ଗୋଳାଗୁଳି ଭାରତକୁ ଚାଲାଣ କରାଯାଉଥିଲା । ୧୮୫୭ ବିଦ୍ରୋହର ସୁବର୍ଣ୍ଣଜୟନ୍ତୀ ପାଳନ କରିବା ଅବସରରେ ଯୁବକ 'ସ୍ୱାଧୀନତାଯୁଦ୍ଧ' ନାମରେ ଏକ ପୁସ୍ତକ ପ୍ରଣୟନ କରିଥିଲେ । ଏହି ପୁସ୍ତକରେ ଏପରି ଉନ୍ମାଦନା ପୂରି ରହିଥିଲା ଯେ ମୃତବ୍ୟକ୍ତି ମଧ୍ୟ ଚେଇଁ ଉଠିବ । ମୃତ ଭାରତଜାତିକୁ ଚେତାଇ ଦେବାର ବୀଜ ସେଥିରେ ନିହିତ ଥିଲା । ତେଣୁ ବ୍ରିଟିଶ ସରକାର କାଳବିଳମ୍ବ ନକରି ସେ ପୁସ୍ତକଟିକୁ ବାଜ୍ୟାପ୍ତି କରିଦେଲେ । ମାତ୍ର ଦୁଇ ତିନିବର୍ଷ ମଧ୍ୟରେ ଏହି 'ଅଭିନବ ଭାରତ' ସଂସ୍ଥା ବିଦ୍ୟୁତ୍‌ପରି ଭାରତରେ ଓ ଇଉରୋପର କେତେକ ଦେଶରେ ଖେଳିଗଲା । ଏହି ସଂସ୍ଥାର ଜଣେ ବିପ୍ଳବୀ ମଦନଲାଲ୍ ଧୀଙ୍ଗ୍ରା କର୍ଜନଓ୍ୱାଲି ନାମକ ଏକ ଗୋରା ଅଫିସରଙ୍କୁ ଲଣ୍ଡନରେ ହତ୍ୟାକଲେ । ସେହି ବର୍ଷ ନାସିକର ଗୋରା କଲେକ୍ଟର ମଧ୍ୟ ଏହି ଦଳଦ୍ୱାରା ନିହତ ହେଲେ । ଏଥିରେ ତିନିଜଣ ଭାରତୀୟ ଯୁବକଙ୍କୁ ଫାଶୀ ଦିଆଗଲା । ଭାରତସାରା ଧରପଗଡ଼ ଚାଲିଲା । ଚାରିଆଡ଼େ ଗୋଇନ୍ଦା ପୁଲିସ ଛୁଟି ହୋଇଗଲେ । ବିଦ୍ରୋହର ମଞ୍ଜିଟି କେଉଁଠି ରହିଲା ? ପ୍ରକୃତ ମଞ୍ଜି ଥିଲା ସିଂହଗୁହାରେ

ଅର୍ଥାତ୍ ଇଂଲଣ୍ଡରେ । ବ୍ରିଟିଶ ସରକାର ସୁରାକ୍ ପାଇଗଲେ । ଆଇନ ପଢୁଆ ମରହଟ୍ଟା ଯୁବକ ଧରାହେଲେ । ଇଂଲଣ୍ଡରେ ରଖିବା ନିରାପଦ ନୁହେଁ ଭାବି ତାଙ୍କୁ ଏକ ଜାହାଜରେ ଭାରତକୁ ପଠାଇ ଦିଆଗଲା । ଯୁବକ ଯେତିକି ନିର୍ଭୀକ ସେତିକି ସାହସୀ ଓ ଦେଶପ୍ରେମୀ । ଦେଶପ୍ରେମ ନିଶା ତାଙ୍କୁ ସର୍ବଦା ଘାରୁଥିଲା । ତାଙ୍କୁ ଯେତେବେଳେ ଜାହାଜରେ ବସାଇଦିଆଗଲା ଦୁଇ ଜଣ ବିପ୍ଳବୀ ମାଡ଼ମ କାମା ଓ ଭି. ଭି. ଏସ୍ ଆୟାର ତାଙ୍କୁ ଉଦ୍ଧାର କରିବା ପାଇଁ ଫ୍ରାନ୍‌ସ ଉପକୂଳକୁ ଯାଇଥିଲେ । ସାହସୀ ଯୁବକ ଜାହାଜରୁ କୌଶଳରେ ଖସିଯାଇ ପହଁରି ପହଁରି ଫ୍ରାନ୍‌ସର ଭୂମଧ୍ୟସାଗରୀୟ ଉପକୂଳରେ ପହଞ୍ଚିଲେ । ଅନୁଧାବନକାରୀଙ୍କ କବଳରୁ ଖସିଯାଇପାରିଥାନ୍ତେ ମାତ୍ର ଉଦ୍ଧାରକ ଦଳର ଆସିବାରେ ୫ମିନଟି ଡେରି ହୋଇଗଲା । ସବୁ ଭଣ୍ଡୁର ହୋଇଗଲା, ଯୁବକ ଫାନ୍‌ସ ପୋଲିସ ଯୋଗୁଁ ପୁନଃ ଧରାହେଲେ ।

ବିଧିର ବିଧାନକୁ କେହି ଲଙ୍ଘି ପାରିବନାହିଁ । ବମ୍ବେରେ ତାଙ୍କର ବିଚାର ଚାଲିଲା । ୧୯୧୧ ମସିହା ଜାନୁଆରୀ ୩୦ ତାରିଖ, ବମ୍ବେର ସ୍ପେଶାଲ ଜଜଙ୍କ କକ୍ଷ ଲୋକାରଣ୍ୟ । ଜଣେ ସାଧାରଣ ପତଳା ଯୁବକ ପ୍ରବଳ ପରାକ୍ରାନ୍ତ ବ୍ରିଟିଶକେଶରୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛନ୍ତି । ବହୁଦିନହେଲା ବିଚାର ଚାଲିଛି । ଆଜି ରାୟ ବାହାରିବ । ଜନତା ଉତ୍କଣ୍ଠିତ ଚିତ୍ତରେ ରାୟ ଶୁଣିବାପାଇଁ ଆଗ୍ରହୀ । ଯୁବକ କାଠ ଅର୍ଦ୍ଧଳୀ ଭିତରେ ଖାରଦର୍ପରେ ଦଣ୍ଡାୟମାନ । ବାହାରୁ ଜୟ ଜୟକାର ଧ୍ୱନି ଭାସି ଆସୁଛି । ଯୁବକ ଉଲ୍ଲସିତ ଓ ଉତ୍ତେଜିତ ଜନତା ଉଚ୍ଛୃଙ୍ଖଳ । ଅପରାହ୍ଣରେ ଗୋରା ଜଜ ରାୟ ଶୁଣାଇ ଦେଲେ, "ଦୋଷୀ ୫୦ ବର୍ଷ ଜେଲ୍‌ଦଣ୍ଡ ଭୋଗ କରିବ ।" ସମସ୍ତଙ୍କର ଚକ୍ଷୁ ଯୁବକଙ୍କ ଆଡ଼କୁ ଗତି-କଲା । ଯୁବକ ଅଦମନୀୟ । ସେ ଉନ୍ନତଶିର ଓ ଗର୍ବୋଦ୍ଧତ ସ୍ୱରରେ କହି-ଉଠିଲେ "ପଚାଶ ବର୍ଷ ? ଭାରତମାତାର ଶୃଙ୍ଖଳ ଛିନ୍ନ କରିବାପାଇଁ ମୁଁ ସର୍ବୋଚ୍ଚ ଶାସ୍ତି ଗ୍ରହଣକରିବାକୁ ପ୍ରସ୍ତୁତ । କିନ୍ତୁ ବ୍ରିଟିଶ ଶାସନ ଏ

ଦେଶରେ ୫୦ ବର୍ଷ ରହିବ ତ ?" ଦର୍ଶକମାନେ କରତାଳି ଦେଲେ । ମୂକଜନତାଙ୍କର ଅନ୍ୟ କିଛି କରିବାର ଉପାୟ ନଥିଲା ।

ଏହି ବୀର ଯୁବକ କିଏ ଜାଣିକି ? ଏ ହେଉଛନ୍ତି ସେହି ଯୁବକ ଯେ ଉଚ୍ଚାରଣ କରିଥିଲେ 'ବୀରଭୋଗ୍ୟା ବସୁନ୍ଧରା ।' ସମଗ୍ର ଜୀବନଟା ତାଙ୍କର ଦେଶପାଇଁ ଉତ୍ସର୍ଗ କରିଥିଲେ । ଏ ହେଉଛନ୍ତି ବୀର ବିନାୟକ ଦାମୋଦର ସଭରକର୍ । ଜ୍ୱାଳାମୟୀ ବକ୍ତୃତା ଦେବାରେ ସେ ଥିଲେ ଅଦ୍ୱିତୀୟ ଭାରତୀୟ । ତାଙ୍କପରି ନିର୍ଭୀକ, ସାହସୀ, ଅପରାଜେୟ ବ୍ୟକ୍ତି ଭାରତରେ ବିରଳ । ତେଣୁ ତାଙ୍କୁ 'ବୀର' ଉପାଧିରେ ଭୂଷିତ କରାଯାଇ-ଥିଲା ।

ଆଣ୍ଡାମାନ ଜେଲରେ ସେ ୧୦ ବର୍ଷରୁ ଊର୍ଦ୍ଧ୍ୱ ସମୟ କଟାଇ-ଥିଲେ । ତାଙ୍କୁ ଲେଖିବା ପାଇଁ କାଗଜ କଲମ ଯୋଗାଇ ଦିଆଯାଇ ନଥିଲା । ଜେଲ ଗୃହର ଧଳାକାନ୍ଥରେ ନିଜର ଭାବନା ରାଜି ଲେଖି ପକାଇଥିଲେ ଏବଂ ତାକୁ ମୁଖସ୍ଥ କରି ଦେଇଥିଲେ । ଏହି ଚିନ୍ତା ଭାବନାକୁ ଏକତ୍ର କରି ହିନ୍ଦୁତ୍ୱ ନାମକ ଏକ ପ୍ରସିଦ୍ଧ ଦର୍ଶନ ପୁସ୍ତକ ପ୍ରକାଶ କରିଥିଲେ । ୧୯୨୩ରେ ସେ ମହାରାଷ୍ଟ୍ରର ରତ୍ନଗିରି ଜେଲକୁ ଅଣାଗଲେ । ୧୯୩୭ ମସିହା ପର୍ଯ୍ୟନ୍ତ ସେ ନଜରବନ୍ଦୀରେ ରହିଲେ । ବମ୍ବେର ମଧ୍ୟବର୍ତ୍ତୀ କାଳୀନ ଗୃହମନ୍ତ୍ରୀ ଯମୁନା ଦାସ ମେହେଟା ପୂର୍ଣ୍ଣ-ଭାବରେ ତାଙ୍କୁ ମୁକୁଳାଇ ଦେଲେ ।

ଦେଶର ଚାରିଆଡ଼ୁ ସମ୍ବର୍ଦ୍ଧନାସୂଚକ ବାର୍ତ୍ତାମାନ ଅଜାଡ଼ି ହୋଇ ପଡ଼ିଲା । ଏପରିକି ପଣ୍ଡିତ ନେହେରୁ ଓ ସୁଭାଷଚନ୍ଦ୍ର ବୋଷ ମଧ୍ୟ ତାଙ୍କ ପାଖକୁ ଉଚ୍ଛ୍ୱସିତ ସ୍ୱାଗତ ବାର୍ତ୍ତାମାନ ପଠାଇଥିଲେ । ୧୯୬୬ ରେ ପଚଶତ ବୟସରେ ତାଙ୍କର ଦେହାନ୍ତ ହୋଇଥିଲେ ମଧ୍ୟ ବର୍ଷୀୟାନ ପ୍ରବୀଣ ରାଜନୀତିଜ୍ଞ ରାଜାଜୀ ତାଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶକରି କହି-ଥିଲେ, "ମହାବୀର ସଭରକର୍ ମୋର ପ୍ରଥମ ବିପ୍ଳବୀ ଗୁରୁ" । ବାସ୍ତବିକ ବୀର ସଭରକର୍‌ଙ୍କର ଦେଶପ୍ରୀତି ଥିଲା ଅସୀମ । ଦେଶର ଇଜ୍ଜତକୁ ସେ

କାର୍ଯ୍ୟରେ ପରିଣତ କରିଥିଲେ । ସେ କହିଥିଲେ ଯେଉଁଠାରେ ସାହସୀ ଲୋକ ଥାନ୍ତି ସେଠାରେ ଯୁଦ୍ଧର ଗତି କ୍ଷୀଣ ହୁଏ । ସେ ଥିଲେ ଅତି ଦୁଃସାହସିକ ନେତା । ଭାରତର ମହାପୁରୁଷମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ପୁରୁଷ ପୁରୁଷ ଧରି ତାଙ୍କର ନିଃସ୍ୱାର୍ଥପର ତ୍ୟାଗ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରୁଥିବ ।

---